# ସୂଚୀ



—

# ଗ୍ରୀସ୍‌ଦେଶର ଦେବ-ଦେବୀ

ଆମ ଦେଶର ହିନ୍ଦୁମାନେ ଯେପରି ଅନେକ ଦେବଦେବୀଙ୍କୁ ମାନନ୍ତି, ପୂର୍ବକାଳରେ ଗ୍ରୀସ୍‌ଦେଶର ଲୋକେ ସେହିପରି ଅନେକ ଦେବଦେବୀ ଥିବା ବିଶ୍ୱାସ କରୁଥିଲେ । ଆମ ମତରେ କିନ୍ନର-କିନ୍ନରୀ ମନୁଷ୍ୟ ନୁହନ୍ତି– କିନ୍ତୁ ସେମାନେ ମନୁଷ୍ୟମାନଙ୍କଠାରୁ ଉଚ୍ଚତର ଓ ଦେବଦେବୀଙ୍କଠାରୁ ନିମ୍ନତର । ଆମ ଦେଶର ପୁରାଣମାନଙ୍କରେ ଦେବ-ଦେବୀମାନେ ବେଳେବେଳେ ପୃଥିବୀକୁ ଆସୁଥିବା ଓ ମନୁଷ୍ୟମାନଙ୍କ ସହିତ ସେମାନଙ୍କର ବିବାହ ସମ୍ବନ୍ଧ ହୋଇଥିବାର ମଧ ବର୍ଣ୍ଣନା ଅଛି । ଗ୍ରୀସ୍‌ଦେଶର ପୁରାଣମାନଙ୍କରେ ମଧ ଠିକ୍ ସେହିଭଳି ବର୍ଣ୍ଣନା ଦେଖାଯାଏ । ଉଦାହରଣସ୍ୱରୂପ ମହାଭାରତରୁ ଜଣାଯାଏ ଯେ କର୍ଣ୍ଣ ସୂର୍ଯ୍ୟଦେବଙ୍କର ଓ ଭୀମ ପବନଦେବଙ୍କର ପୁତ୍ର ଥିଲେ ।

କିନ୍ନର-କିନ୍ନରୀମାନେ ଗୀତ ନୃତ୍ୟାଦିରେ ନିପୁଣ ବୋଲି ଆମର ପୁରାଣ-ମାନଙ୍କରେ ବର୍ଣ୍ଣିତ; ଗ୍ରୀସ୍‌ଦେଶର ପୁରାଣମାନଙ୍କରେ ସେମାନଙ୍କୁ ଦେବଦେବୀ-ମାନଙ୍କର ସହଚର ସହଚରୀ ରୂପେ ବର୍ଣ୍ଣନା କରାଯାଇଅଛି ।

ପ୍ରାଚୀନ ଗ୍ରୀସ୍‌ବାସୀମାନେ ବିଶ୍ୱାସ କରୁଥିଲେ ଯେ ବୃକ୍ଷଲତା, ନଦନଦୀ ପ୍ରଭୃତି ପ୍ରାକୃତିକ ପଦାର୍ଥର ଯେପରି ଗୋଟିଏ ଲେଖାଏଁ ଦେବ ବା ଦେବୀ ଅଛନ୍ତି, ସଙ୍ଗୀତବିଦ୍ୟା, ଧନୁର୍ବିଦ୍ୟା, ସୌନ୍ଦର୍ଯ୍ୟ ପ୍ରଭୃତି ଗୁଣର ମଧ ଗୋଟିଏ ଲେଖାଏଁ ଦେବ ବା ଦେବୀ ଅଛନ୍ତି । ଏ ଦିଗରେ ଭାରତ ବା ପ୍ରାଚୀନ ଗ୍ରୀସ୍ ମଧରେ ଯଥେଷ୍ଟ ସମାନତା ଦେଖାଯାଏ । ଉଦାହରଣସ୍ୱରୂପ ଆମର ସୂର୍ଯ୍ୟ ଏକ ଦେବତା; ଗ୍ରୀକ୍‌ମାନଙ୍କ ମତରେ ମଧ ତାହା । ସେମାନେ ସୂର୍ଯ୍ୟଦେବତାଙ୍କୁ କହୁଥିଲେ ଆପୋଲୋ । କନ୍ଦର୍ପ ହେଉଛନ୍ତି ପ୍ରେମର ଦେବତା ଓ ଫୁଲର ଧନୁଶର ଧରିଥାନ୍ତି । ଗ୍ରୀକ୍‌ମାନଙ୍କର ପ୍ରେମର ଦେବତା ହେଉଛନ୍ତି ଏରସ୍; ସେ ମଧ ଫୁଲଧନୁ ଧରିଥାନ୍ତି । ଇନ୍ଦ୍ର ହେଉଛନ୍ତି ଆମର ଦେବତା-ମାନଙ୍କର ରାଜା । ଗ୍ରୀକ୍‌ମାନଙ୍କ ଦେବତାମାନଙ୍କର ରାଜାଙ୍କ ନାମ ଜିଅସ୍ । ସରସ୍ୱତୀଙ୍କୁ ଆମେ ବିଦ୍ୟାର ଦେବୀ ବୋଲି ପୂଜା କରୁଁ । ଗ୍ରୀକ୍‌ମାନେ ସେହିପରି କାଲିଓପ୍‌ଙ୍କୁ ବିଦ୍ୟାର ଦେବୀ ବୋଲି ମାନନ୍ତି । ଏହିପରି ଶତ ଶତ ଉଦାହରଣ ଦିଆଯାଇପାରେ ।

ପ୍ରାଚୀନ ଗ୍ରୀସ୍‌ଦେଶର ଦେବ-ଦେବୀ, କିନ୍ନର-କିନ୍ନରୀ ଓ ମାନବ-ମାନବୀଙ୍କୁ ଅବଲମ୍ବନ କରି ଅନେକ ପୌରାଣିକ କାହାଣୀର ସୃଷ୍ଟି ହୋଇଅଛି । ଏଠାରେ ସେହି କାହାଣୀମାନଙ୍କ ମଧରୁ କେତୋଟି ଉଦାହରଣ ଦିଆଯାଉଅଛି ।

# ପ୍ଲୁଟୋ ଓ ପର୍ସିଫୋନି

ମରଣର ଦେବତା ହେଉଛନ୍ତି ପ୍ଲୁଟୋ । ତାଙ୍କର ରାଜ୍ୟ ହେଉଛି ପାତାଳରେ । ତାଙ୍କ ନଅରର ଫାଟକ ପାଖରେ ଗୋଟାଏ ଭୀଷଣ କୁକୁର ଜଗିରହିଥାଏ । ତାହାର ନାମ ସେର୍ବେରସ୍ । ନଅରକୁ ନଅଥର ବେଢ଼ି ଗୋଟିଏ ନଦୀ ଅଛି । ତାର ନାମ ଷ୍ଟିକ୍ସ । ଏହାକୁ ପାରି କରାଇବାପାଇଁ ଜଣେ ନାଉରି ଥାଏ । କେବଳ ଯେଉଁମାନେ ମରିଯାନ୍ତି, ସେଇମାନଙ୍କୁ ସେ ନଦୀ ପାରି କରି ପ୍ଲୁଟୋଙ୍କ ରାଜ୍ୟକୁ ନେଇଯାଏ ଓ ସେର୍ବେରସ୍ ସେମାନଙ୍କୁ ନଅର ଭିତରକୁ ଛାଡ଼ିଦିଏ । ସେଠାରେ ପାପୀମାନଙ୍କୁ ଭୀଷଣ ଦଣ୍ଡ ଦିଆଯାଏ ।

ପ୍ଲୁଟୋ ଦେଖିବାକୁ ଅତି ଭୟଙ୍କର । ତାଙ୍କ ଦେହଟା ତ୍ରିପଣ୍ଡ କଳା । ତାଙ୍କର ଏହି ବିକୃତ ରୂପ ଯୋଗୁଁ ଦେବ-ଦେବୀ ଓ କିନ୍ନର-କିନ୍ନରୀମାନେ ତାଙ୍କୁ ଭୟ କରି ରହୁଥିଲେ । ତେବେ ମରଣର ଦେବତାଭାବେ ତାଙ୍କର କ୍ଷମତା କମ୍ ନୁହେଁ । ସେ ବେଳେ ବେଳେ ପାତାଳପୁରରୁ ଅନ୍ଧାରୁଆ ଗୁହାବାଟେ ଆପଣା ରଥରେ ବସି ପୃଥିବୀକୁ ବୁଲିଆସୁଥିଲେ । ସେ ଯେପରି କଳା, ତାଙ୍କର ରଥ ଓ ଘୋଡ଼ା ମଧ ସେହିପରି କଳା ।

ତାଙ୍କ ନଅର ଏକ ଭୟଙ୍କର ସ୍ଥାନ । ସୂର୍ଯ୍ୟଙ୍କ କିରଣ କେବେ ହେଲେ ସେଠାରେ ପ୍ରବେଶ କରେନାହିଁ । ପକ୍ଷୀମାନଙ୍କର ମଧୁର ସ୍ୱର ଶୁଣିବାକୁ ମିଳେନାହିଁ । ବୃକ୍ଷ ନାହିଁ, ଲତା ନାହିଁ, ଫୁଲଫଳ ଅବା କାହୁଁ ଆସିବ ?

ଡିମେଟର ହେଉଛନ୍ତି ବୃକ୍ଷଲତାର ଦେବୀ । ତାଙ୍କ ଦୟାରୁ ପୃଥିବୀର ବୃକ୍ଷଲତାମାନେ ଫୁଲଫଳ ଧରନ୍ତି । ଡିମେଟରଙ୍କ ଏହି ଅନୁଗ୍ରହପାଇଁ ପୃଥିବୀର ଲୋକେ ତାଙ୍କୁ ଭଲପାଉଥିଲେ ଓ ପୂଜା କରୁଥିଲେ । ତାଙ୍କର ଗୋଟିଏ ଅତି ସୁନ୍ଦରୀ ଝିଅ ଥିଲା । ତାହାର ନାମ ପର୍ସିଫୋନି । ସେ ତାର କିନ୍ନରୀ ସହଚରୀମାନଙ୍କୁ ଘେନି ବଣଜଙ୍ଗଲରେ ବୁଲୁଥିଲା ଓ ବେଳ ଦେଖି ମାଆଙ୍କ ପାଖକୁ ଫେରିଯାଉଥିଲା ।

ଦୈବାତ୍ ଦିନେ ପ୍ଲୁଟୋ ତାଙ୍କ ରଥରେ ବସି ପୃଥିବୀକୁ ବୁଲି ଆସିଥିଲେ । ବୁଲୁ ବୁଲୁ ସେ ଦେଖିଲେ ପର୍ସିଫୋନି କିନ୍ନରୀମାନଙ୍କ ସାଥିରେ ଖେଳୁଛି । ଏଭଳି ସୁନ୍ଦରୀ ଝିଅ ସେ କେବେ ଦେଖିନଥିଲେ । ଦେଖିଲାକ୍ଷଣି ତାକୁ ନିଜର ରାଣୀ କରିବାକୁ ତାଙ୍କର ମନହେଲା । କିନ୍ତୁ ଏପରି ସୁନ୍ଦରୀ ଝିଅ କଅଣ ନିଜ ଇଚ୍ଛାରେ ପ୍ଲୁଟୋ ଭଳି କଦର୍ଯ୍ୟ ପୁରୁଷକୁ ବିଭା ହେବ— ସେ ପାତାଳପୁରର ରାଜା ହେଲେ କଅଣ ହେଲା ?

ପ୍ଲୁଟୋ ଦେଖିଲେ ଯେ ଏଠାରେ ବଳ ପ୍ରୟୋଗ ଛଡ଼ା ଅନ୍ୟ ଉପାୟନାହିଁ । ସେ ଜୋର୍‌କରି ପର୍ସିଫୋନିକୁ ଟେକିନେଇ ରଥରେ ବସାଇଲେ । ତାର ସହଚରୀମାନେ ଭୟରେ ପଳାଇଗଲେ । ପ୍ଲୁଟୋଙ୍କର ରଥ ଯାଇ ଗୋଟିଏ ପ୍ରକାଣ୍ଡ ଗାତ ଭିତରେ ପଶିଲା । ସେହି ଅନ୍ଧାରୁଆ ସୁଡ଼ଙ୍ଗ ବାଟରେ ଯାଇ ରଥ ପ୍ଲୁଟୋଙ୍କ ନଅର ପାଖରେ



ପହଞ୍ଚିଲା । ପର୍ସିଫୋନିଙ୍କ ମନରେ କି ଦୁଃଖ ହୋଇଥିବ ତାହା ଅନୁମାନ କରାଯାଇ-ପାରେ । ଯିଏ ଦିନଯାକ ସୂର୍ଯ୍ୟ ଆଲୁଅରେ ଗଛଲତା ମେଳରେ ଖେଳି ବୁଲୁଥିଲା, ତାକୁ ଏକ ଅନ୍ଧକାରମୟ ସ୍ଥାନରେ ରହିବାକୁ ହେଲା ।

ବାଟରେ ଆସୁଥିବା ବେଳେ ତାର ଚିନ୍ତା ହେଲା ଯେ ତାର ମାଆାକୁ କିଏ ଏ ଖବର ଦେବ । ତେଣୁ ପ୍ଲୁଟୋ ତାକୁ ରଥରେ ନେଇ ଯାଉଥିବାବେଳେ ସେ ଗୋଟିଏ ନଦୀ ନିକଟରେ ଜଣେ କିନ୍ନରୀକୁ ଦେଖି ନିଜ ଅଣ୍ଟାର ଚନ୍ଦ୍ରହାରଟି ଫିଙ୍ଗିଦେଇ କହିଥିଲା, ଏ ଚନ୍ଦ୍ରହାରଟିକୁ ମୋ ମାଆ ଡିମେଟରଙ୍କୁ ଦେବୁ ।

ଏଣେ ଡିମେଟର ଝିଅ ପର୍ସିଫୋନିକୁ ଖୋଜି ଖୋଜି ପୃଥିବୀଯାକ ବୁଲିଲେ । ବୃକ୍ଷଲତାର ଦେବୀ ହୋଇଥିବାରୁ ସେ ଗଛମାନଙ୍କରେ ଫୁଲଫଳ ସୃଷ୍ଟି କରୁଥିଲେ । ଏବେ ଝିଅକୁ ଖୋଜିବାରେ ବ୍ୟସ୍ତ ରହିବାରୁ ସେ ତାଙ୍କର କର୍ତ୍ତବ୍ୟ ଭୁଲିଗଲେ । ପୃଥିବୀର ଗଛପତ୍ର ଶୁଖିଗଲା, ଗୋଟିଏ ହେଲେ ଫୁଲଫଳ ଦେଖାଗଲାନାହିଁ । ଲୋକେ ଖାଇବାକୁ ପାଇଲେ ନାହିଁ । ଚାରିଆଡ଼େ ହାହାକାର ପଡ଼ିଗଲା ।

ଡିମେଟର ନାନାଆଡ଼େ ବୁଲି ବୁଲି ଗୋଟିଏ ନଦୀକୂଳେ ପହଞ୍ଚିଲେ । ସେଠାରେ ଗୋଟିଏ କିନ୍ନରୀକୁ ଦେଖିଲେ । ସେ ପର୍ସିଫୋନିର ଚନ୍ଦ୍ରହାରଟି ଡିମେଟରଙ୍କୁ ଦେଇ ସମ୍ବାଦ ଦେଲା ଯେ ପ୍ଲୁଟୋ ତାକୁ ଜୋର୍‌କରି ରଥରେ ବସାଇ ନେଇଯାଇଛନ୍ତି । ଯାହା ହେଉ, ଏତେ କାଳ ପରେ ଝିଅର ସମ୍ବାଦ ପାଇ ଡିମେଟର ଟିକିଏ ଆଶ୍ୱସ୍ତ ହେଲେ ଓ କିପରି ଝିଅକୁ ଉଦ୍ଧାର କରିବେ ସେଥିଲାଗି ବ୍ୟାକୁଳ ହୋଇପଡ଼ିଲେ । ସେ ଗୋଟିଏ ନଦୀ ଧାରରେ ଯାଇ ଯାଇ ଶେଷରେ ତାର ଉତ୍ପତ୍ତି ସ୍ଥାନରେ ପହଞ୍ଚିଲେ । ବୁଲି ବୁଲି କ୍ଳାନ୍ତ ହୋଇଥିବାରୁ ସେ ବସିପଡ଼ିଲେ । ଏହି ସମୟରେ ନଦୀଟି କୁଳୁକୁଳୁ ସ୍ୱରରେ କହିଲା, ''ମୁଁ ତୁମକୁ ପର୍ସିଫୋନିର ବିଶେଷ ଖବର ଦେଇପାରିବି । ପାତାଳର ରାଜା ପ୍ଲୁଟୋ ତୁମ ଝିଅ ପର୍ସିଫୋନିକୁ ନିଜର ରାଣୀ କରି ରଖିଛନ୍ତି ।''

ଡିମେଟର ନଦୀକୁ ଧନ୍ୟବାଦ ଦେଲେ । ଏବେ ପର୍ସିଫୋନିକୁ କିପରି ଉଦ୍ଧାର କରିବେ ତାହାହିଁ ତାଙ୍କର ପ୍ରଧାନ ଚିନ୍ତା ହେଲା । ସେ ଦେବତାମାନଙ୍କର ରାଜା ଜିଅସ୍‌ଙ୍କ ନିକଟକୁ ଯାଇ ପ୍ରାର୍ଥନାକଲେ, ''ତୁମେ ହେଉଛ ଦେବତା-ମାନଙ୍କର ରାଜା । ତୁମ ରାଜ୍ୟରୁ ମୋର ଝିଅକୁ ପାତାଳର ରାଜା ପ୍ଲୁଟୋ ନେଇଯାଇଛି । ତାକୁ ଫେରାଇ ଆଣିବାରେ ମୋତେ ସାହାଯ୍ୟ କର ।''

ଜିଅସ୍ ଉତ୍ତରକଲେ, ''ଆଚ୍ଛା, ମୁଁ ତାର ଉପାୟ କରିବି । କିନ୍ତୁ ଗୋଟିଏ କଥା ଅଛି । ତୁମ ଝିଅ ଏତେ ଦିନ ହେଲା ପାତାଳପୁରୀରେ ରହିଲାଣି । ସେ ଯେବେ ଏଥି ମଧ୍ୟରେ ପାତାଳପୁରୀରେ କିଛି ଖାଇନଥିବ ତେବେ ମୁଁ ଚିରଦିନପାଇଁ ତାକୁ ତୁମପାଖକୁ ଫେରାଇଆଣିବି ।'' ଏହା କହି ସେ ତାଙ୍କର ଦୂତ ହର୍ମିସ୍‌କୁ ପାତାଳପୁରକୁ ପଠାଇ ଆଦେଶ ଦେଲେ, ''ତୁମେ ଯାଇ ପ୍ଲୁଟୋଙ୍କୁ କହିବ, ପର୍ସିଫୋନିକୁ ସେ ଛାଡ଼ିଦିଅନ୍ତୁ । ସେ ତା ମାଆ ପାଖକୁ ଯିବ ।''

ହର୍ମିସ୍ ପାତାଳପୁରକୁ ଯାଇ ପ୍ଲୁଟୋଙ୍କୁ ଜିଅସ୍‌ଙ୍କର ଆଦେଶ ଜଣାଇଲେ । ପ୍ରଥମେ ପ୍ଲୁଟୋ ପର୍ସିଫୋନିକୁ ଛାଡ଼ିଦେବାପାଇଁ ଏକବାରେ ମନାକରୁଥିଲେ; କିନ୍ତୁ ଦେବରାଜ ଜିଅସ୍‌ଙ୍କର ଆଦେଶ ନମାନିଲେ ପରିଣାମ ଭଲ ହେବନାହିଁ ବୋଲି ଭାବି କହିଲେ, "ମୁଁ ପର୍ସିଫୋନିକୁ ଛାଡ଼ିଦିଅନ୍ତି; କିନ୍ତୁ ସେ ପାତାଳପୁରରେ ଗୋଟିଏ ଡାଳିମ୍ବର ଛଅଟି ମଞ୍ଜି ଖାଇଅଛି । ତେଣୁ ସେ ଯିବ କିପରି ?" ଶେଷରେ ହର୍ମିସ୍ ଓ ପ୍ଲୁଟୋଙ୍କ ବିଚାରରେ ସ୍ଥିର ହେଲା ଯେ ପର୍ସିଫୋନି ଛଅଟି ଡାଳିମ୍ବ ମଞ୍ଜି ଛଡ଼ା ଆଉ କିଛି ଖାଇନାହିଁ । ତେଣୁ ପ୍ରତି ମଞ୍ଜିପାଇଁ ସେ ମାସେ ହିସାବରେ ଛଅମାସଯାଏ ପାତାଳପୁରୀରେ ରହିବ ଓ ବର୍ଷର ଅନ୍ୟ ଛଅ ମାସ ପୃଥିବୀ ଉପରକୁ ଆସି ମାଆ ଡିମେଟରଙ୍କ ପାଖରେ ରହିବ ।

ଛଅମାସପାଇଁ ପର୍ସିଫୋନି ମାଆଙ୍କ ପାଖକୁ ଆସିଲା । ଡିମେଟର ଖୁସି ହେଲେ । ପୃଥିବୀର ଗଛଲତାରେ ପୁଣି ଫୁଲଫଳ ଦେଖାଦେଲା । ଚାରିଆଡ଼ ସୂର୍ଯ୍ୟଙ୍କ କିରଣରେ ହସିଉଠିଲା ।

ପ୍ରାଚୀନ ଗ୍ରୀସ୍‌ର ଲୋକେ ବିଶ୍ୱାସ କରୁଥିଲେ ଯେ ପୃଥିବୀରେ ଯେଉଁ ଛଅମାସ ପର୍ସିଫୋନି ରହନ୍ତି, ସେହି ସମୟରେ ବୃକ୍ଷଲତା ଫୁଲଫଳ ଧରେ । କିନ୍ତୁ ତା'ପରେ ଛଅମାସପାଇଁ ଯେତେବେଳେ ପ୍ଲୁଟୋଙ୍କ ପାଖକୁ ଚାଲିଯାନ୍ତି ସେତେବେଳେ ପୃଥିବୀରେ ଭାରି ଥଣ୍ଡା ହୁଏ । ଗଛରୁ ପତ୍ର ସବୁ ଝଡ଼ିପଡ଼େ, ଫୁଲସବୁ ମଉଳିଯାଆନ୍ତି । ସେମାନଙ୍କର ଧାରଣା ଥିଲା, ପର୍ସିଫୋନି ପୃଥିବୀରେ ଥିବା ଛଅମାସରେ ଗ୍ରୀଷ୍ମଋତୁ ହୁଏ ଓ ସେ ପ୍ଲୁଟୋଙ୍କ ପାଖରେ ଯେଉଁ ଛଅମାସ ରହନ୍ତି ସେତେବେଳେ ଶୀତଋତୁ ହୁଏ ।

—

# ଅର୍ଫିୟସ୍ ଓ ଇଉରିଡିସ୍

କାଲିଓପ ହେଉଛନ୍ତି କବିତା ଓ ଲଳିତ କଳାର ଦେବୀ । ତାଙ୍କର କଣ୍ଠସ୍ୱର ଅତି ମଧୁର ଥିଲା ଓ ସେ ବିବିଧ ଗୀତବାଦ୍ୟରେ ନିପୁଣା ଥିଲେ । ତାଙ୍କ ପୁଅର ନାମ ଅର୍ଫିୟସ୍ । ପିଲାଟି ଦିନରୁ ଅର୍ଫିୟସ୍ ମାଆଙ୍କଠାରୁ ବାଦ୍ୟ ଶିକ୍ଷାକଲେ । ବୀଣା ବଜାଇବାରେ ସେ ପାରଦର୍ଶୀ ହୋଇଉଠିଲେ । ତାଙ୍କର କଣ୍ଠସ୍ୱର ମଧ୍ୟ ମଧୁର ଥିଲା । ସେ ଯେତେବେଳେ ବୀଣା ବଜାଇ ମଧୁର ସ୍ୱରରେ ଗୀତ ଗାଉଥିଲେ, ସେତେବେଳେ ଲୋକେ ତାହା ଶୁଣିବାକୁ ଜମା ହୋଇଯାଉଥିଲେ । ମନୁଷ୍ୟଙ୍କ କଥା କଅଣ, ପଶୁପକ୍ଷୀମାନେ ସୁଦ୍ଧା ସ୍ତବ୍ଧ ହୋଇ ତାହା ଶୁଣୁଥିଲେ । ସିଂହ, ବ୍ୟାଘ୍ରମାନେ ମଧ୍ୟ ସେ ମଧୁର ଧ୍ୱନିରେ ନିଜ ନିଜର ହିଂସାଭାବ ଭୁଲିଯାଉଥିଲେ ।

ଦିନେ ଅର୍ଫିୟସ୍ ବଣ ଭିତରେ ବୁଲୁଥିଲେ । ବୀଣା ବଜାଇ ସେ ଗୀତ ଗାଉଥିଲେ ଓ ବଣର ଜୀବଜନ୍ତୁମାନେ ତାହା ଶୁଣୁଥିଲେ । ଏହିପରି ବୁଲୁ ବୁଲୁ ସେ ଏକ ସ୍ଥାନରେ ଜଣେ ଅତି ସୁନ୍ଦରୀ ଯୁବତୀଙ୍କୁ ଦେଖିଲେ । ଯୁବତୀଙ୍କର ଅସାଧାରଣ ସୌନ୍ଦର୍ଯ୍ୟ ଦେଖି ସେ ମୋହିତ ହୋଇଗଲେ । ଯୁବତୀ ମଧ୍ୟ ଅର୍ଫିୟସ୍‌ଙ୍କର ମଧୁର ବୀଣାବାଦ୍ୟ ଓ ଗୀତ ଶୁଣି ତାଙ୍କ ପ୍ରତି ଆକୃଷ୍ଟ ହେଲେ । ଦୁହିଁଙ୍କର ପରିଚୟ ହେଲା ଓ ଦୁହେଁ ପରସ୍ପରକୁ ଭଲପାଇଲେ । ଶେଷରେ ସେ ଦୁହିଁଙ୍କର ବିବାହ ହେଲା । ଏହି ଯୁବତୀଙ୍କର ନାମ ଇଉରିଡିସ୍ ।

ଅର୍ଫିୟସ୍ ଦେବତା ହେଲେହେଁ ସେ ଏହି ଯୁବତୀଙ୍କୁ ଏତେ ଭଲପାଇଲେ ଯେ, ମୁହୂର୍ତ୍ତକପାଇଁ ମଧ୍ୟ ତାଙ୍କଠାରୁ ଦୂରରେ ରହିପାରିଲେନାହିଁ । ସେ ଦୁହିଁଙ୍କପାଇଁ ଜଗତ ଆନନ୍ଦମୟ ହୋଇଉଠିଲା । କିନ୍ତୁ ଚିରଦିନ ସମାନ ଯାଏନାହିଁ । ଦିନେ ଦୈବାତ୍ ଗୋଟିଏ ସାପ କାମୁଡ଼ିଦେବାରୁ ଇଉରିଡିସ୍ ପ୍ରାଣତ୍ୟାଗ କଲେ । ଏବେ ଅର୍ଫିୟସ୍‌ଙ୍କ ଦୁଃଖର ସୀମା ରହିଲାନାହିଁ । ସେ ଇଉରିଡିସ୍‌ଙ୍କୁ ଝୁରି ଝୁରି ବୁଲିବାକୁ ଲାଗିଲେ । ଗୀତ ଗାଇବା ଓ ବୀଣା ବଜାଇବା ସେ ଏକବାରେ ଭୁଲିଗଲେ । ତାଙ୍କ ଗୀତ ଓ ବାଦ୍ୟ ଶୁଣିବାକୁ ନପାଇ ଖାଲି ପୃଥିବୀର ଲୋକେ କଅଣ ଦେବଦେବୀମାନେ ମଧ୍ୟ ହାୟ ହାୟ କରିବାକୁ ଲାଗିଲେ । ଯଦି କେତେବେଳେ କାହାରି ଅନୁରୋଧରେ ସେ ଗୀତ ଗାଇଲେ, ତେବେ ତାର କରୁଣ ମୂର୍ଚ୍ଛନାରେ ଶ୍ରୋତାମାନଙ୍କ ଚକ୍ଷୁରୁ ଲୋତକଧାର ବହିବାକୁ ଲାଗିଲା ।

ଦିନେ ଅର୍ଫିୟସ୍ ନାନାଆଡ଼େ ବୁଲି ବୁଲି ଦେବରାଜ ଜିଅସ୍‌ଙ୍କ ପାଖରେ ପହଞ୍ଚିଲେ । ଜିଅସ୍ ଦେଖିଲେ, ଅର୍ଫିୟସ୍‌ଙ୍କ ଚେହେରା ଏକବାରେ ବଦଳିଯାଇଛି । ମୁହଁରେ ହର୍ଷର ଚିହ୍ନନାହିଁ, ନିଜ ଦେହ ପ୍ରତି ତାଙ୍କର ଆଦୌ ଦୃଷ୍ଟିନାହିଁ । ଜିଅସ୍ ଏଥିର କାରଣ ପଚାରିବାରୁ ଅର୍ଫିୟସ୍ କହିଲେ, ''ମୁଁ ଇଉରିଡିସ୍‌ଙ୍କୁ ବିବାହ କରିଥିଲି । ଆମେ



ଦୁହେଁ ପରସ୍ପରକୁ ଅତି ଭଲପାଉଥିଲୁ; କିନ୍ତୁ ଗୋଟିଏ ସାପ କାମୁଡ଼ି ଦେବାରୁ ତାଙ୍କର ମୃତ୍ୟୁ ଘଟିଲା । ସେହି ଦୁଃଖରେ ମୁଁ ଘୋର କଷ୍ଟ ଭୋଗୁଛି । ତାଙ୍କ ବିନା ମୋର ଜୀବନର ଦରକାର ନାହିଁ । ତେଣୁ ପାତାଳପୁରକୁ ଯାଇ ପ୍ଲୁଟୋଙ୍କଠାରୁ ତାଙ୍କୁ ଫେରାଇ ଆଣିବାକୁ ମୋତେ ଉପାୟ ବତାଇ ଦିଅନ୍ତୁ ।''

ଜିଅସ୍ କହିଲେ, ''ଏହା କି ସମ୍ଭବ ? ଯିଏ ମଲା ସେ ପ୍ଲୁଟୋଙ୍କ ପାତାଳପୁରୀରେ ରହି ନିଜର କର୍ମ ଅନୁସାରେ ଦୁଃଖ ବା ସୁଖ ଭୋଗିବ । ଥରେ କେହି ସେ ରାଜ୍ୟକୁ ଗଲେ ସେ ସେଠାରେ ରହିଲା । ସେଠାରୁ କେହି କେବେ ଫେରିଆସିବାର ଶୁଣାନାହିଁ । ପୁଣି ସେ ରାଜ୍ୟ ଅତି ଭୟଙ୍କର । ସେଠାକୁ ଯିବାକୁ ହେଲେ ପ୍ରଥମେ ଅନ୍ଧକାରମୟ ସୁଡ଼ଙ୍ଗ ବାଟେ ଯିବାକୁ ପଡ଼ିବ । ତାହା ପରେ ପଡ଼ିବ ଷ୍ଟିକ୍‌ସ ନଦୀ । ଏ ନଦୀର ଜଳ ଘୋର କଳା । ଏ ନଦୀକୁ ନୌକାରେ ପାର କରାଇବାପାଇଁ ପ୍ଲୁଟୋ ଜଣେ ନାଉରି ରଖିଥାନ୍ତି । ସେ କେବଳ ମୃତ ବ୍ୟକ୍ତିମାନଙ୍କୁ ନଦୀ ପାର କରାଏ । ତୁମକୁ ସେ ନୌକାରେ ବସାଇବନାହିଁ । ନଦୀ ପାର ହେଲା ପରେ ପ୍ଲୁଟୋଙ୍କ ନଅର ପଡ଼ିବ । ସେଠାରେ ଫାଟକରେ ଗୋଟିଏ ଭୀଷଣ କୁକୁର ଜଗିଛି । ସେ ନଛାଡ଼ିଲେ କେହି ଭିତରକୁ ଯାଇନପାରେ । ଏସବୁ ଟପିକରି ଯିବା ଅସମ୍ଭବ । ତେଣୁ ତୁମେ ଏଭଳି ଅସାଧ ଚେଷ୍ଟା କରନାହିଁ ।''

କିନ୍ତୁ ଅର୍ଫିୟସ୍ ଅଟଳ ରହି କହିଲେ, ''ଦେବରାଜ, ଆପଣଙ୍କ ଉପଦେଶପାଇଁ ଧନ୍ୟବାଦ । କିନ୍ତୁ ମୋର ପ୍ରତିଜ୍ଞା ହେଉଛି, ଇଉରିଡିସ୍‌କୁ ଆଣି ଆସିବି– ନଚେତ୍ ପ୍ରାଣ ହରାଇବି । ଆପଣ ମୋତେ ଆଶୀର୍ବାଦ କରନ୍ତୁ । ମୁଁ ପାତାଳକୁ ଯାଇ ଚେଷ୍ଟା କରିବି ।''

ଅର୍ଫିୟସ୍ ଜିଅସ୍‌ଙ୍କ ଆଶୀର୍ବାଦ ନେଇ ଏହି ବିପଦପୂର୍ଣ୍ଣ କାମରେ ଆଗେଇଲେ । ପ୍ରଥମେ ସେ ଅନେକ ସନ୍ଧାନ ନେଇ ପାତାଳକୁ ପଡ଼ିଥିବା ପଥର ଦ୍ୱାର ପାଇଲେ । ସେହି ସୂକ୍ଷ୍ମପଥରେ ପଶି ସେ ଅନ୍ଧକାରମୟ ପଥରେ ଚାଲିବାକୁ ଲାଗିଲେ । ବହୁ ଦୂର ଅତିକ୍ରମ କଲା ପରେ କଳା ଜଳପୂର୍ଣ୍ଣ ଗୋଟିଏ ନଦୀ ପଡ଼ିଲା । ଏହି ନଦୀଟି ଅଙ୍କାବଙ୍କା ଗତିରେ ପ୍ରବାହିତ ହେଉଥିଲା । ଅର୍ଫିୟସ୍ ଜାଣିଲେ ଯେ ଏହା ହେଉଛି ଷ୍ଟିକ୍‌ସ ନଦୀ । ନଦୀ କୂଳରେ ଜଣେ ନାଉରି ଥିଲା । ମାତ୍ର ସେ ଅର୍ଫିୟସ୍‌ଙ୍କୁ ନଦୀ ପାରକରାଇବାକୁ ମନାକରି କହିଲା, ''ମୁଁ ହେଉଛି ପ୍ଲୁଟୋଙ୍କର ନାଉରି । ମୋତେ ଆଦେଶ ଅଛି ଯେ କେବଳ ମୃତ ଲୋକମାନଙ୍କୁ ନଦୀ ପାର କରାଇବି । ତୁମକୁ ପାର କରାଇବା ଅସମ୍ଭବ । କୌଣସି ଜୀବିତ ଲୋକ କେବେ ଏ ନଦୀ ପାର ହୋଇନାହିଁ ।''

ଅର୍ଫିୟସ୍ ଏଥର ନିଜର ବୀଣାଟି ବଜାଇବାକୁ ଲାଗିଲେ । ଏ ସ୍ୱରରେ କି ମାଧୁରୀ ଥିଲା କେଜାଣି, ନାଉରି ନିଜର କର୍ତ୍ତବ୍ୟ ଭୁଲିଗଲା । ସେ ଅର୍ଫିୟସ୍‌ଙ୍କୁ ନୌକାରେ ବସାଇ ନଦୀ ପାର କରାଇଦେଲା । ଏବେ ପ୍ଲୁଟୋଙ୍କର ନଅର ପଡ଼ିଲା । ଅର୍ଫିୟସ୍ ନଅରର ଫାଟକ ପାଖରେ ପହଞ୍ଚି ଜଗୁଆଳ କୁକୁରକୁ ଦେଖିଲେ । ଏପରି ଏକ ଭୀଷଣ କୁକୁର ସେ ଏଥିପୂର୍ବରୁ କୌଣସିଠାରେ ଦେଖିନଥିଲେ । ଏହାର ତିନୋଟି ମୁଣ୍ଡ । ଅର୍ଫିୟସ୍‌ଙ୍କୁ ଦେଖିବା ମାତ୍ରେ କୁକୁରଟା ଗର୍ଜିଉଠି ତାଙ୍କୁ କାମୁଡ଼ିବାପାଇଁ ଦଉଡ଼ି

ଆସିଲା । ମାତ୍ର ଅର୍ଫିୟସ୍ ଠିଆ ରହି ନିଜର ବୀଣା ବଜାଇଲେ । ସଙ୍ଗେ ସଙ୍ଗେ କୁକୁରଟିର ଭୁକିବା ବନ୍ଦହୋଇଗଲା । ସେ ଆଖିବୁଜି ସେହି ବୀଣାର ଝଙ୍କାର ଶୁଣିବାକୁ ଲାଗିଲା ଓ ଅର୍ଫିୟସ୍ ଫାଟକ ପାର ହୋଇ ଭିତରକୁ ପ୍ରବେଶକଲେ ।

ପାତାଳପୁରୀରେ ମୃତବ୍ୟକ୍ତିମାନଙ୍କର ଯେଉଁସବୁ ଆତ୍ମା ଥିଲେ ସେମାନେ ଅର୍ଫିୟସ୍‌ଙ୍କ ବୀଣାର ସ୍ୱର ଶୁଣି ଅପୂର୍ବ ଆନନ୍ଦ ଅନୁଭବ କଲେ । ଯେଉଁମାନେ ଜୀବନକାଳରେ ପାପ କରିଥିଲେ ସେମାନେ ଦଣ୍ଡ ଭୋଗ କରୁଥିଲେ । ଅର୍ଫିୟସ୍ ଦେଖିଲେ ଗୋଟିଏ ସ୍ଥାନରେ ଦୁଇଜଣ ସ୍ତ୍ରୀଲୋକ ପାଣି ଆଣି ଗୋଟିଏ ପ୍ରକାଣ୍ଡ କୁଣ୍ଡରେ ଢାଳୁଛନ୍ତି । କିନ୍ତୁ ଯେତେ ପାଣି ଢାଳିଲେ ସୁଦ୍ଧା ସେ କୁଣ୍ଡ ପୂରୁନାହିଁ– ପାଣି କୁଆଡ଼େ ଉଭେଇଯାଉଛି । ପ୍ଲୁଟୋଙ୍କର ଜଣେ ଦୂତ ସେ ଦୁହିଁଙ୍କୁ ଜଗି ରହିଛି । ସ୍ତ୍ରୀ ଦୁହେଁ ପାଣି ବୋହିବାରେ ଟିକିଏ ହେଳା କଲେ ସେ ସେମାନଙ୍କୁ ପ୍ରହାର କରୁଥିଲା । ଅର୍ଫିୟସ୍ ଦୂତକୁ ଏହାର କାରଣ ପଚାରିବାରୁ ସେ କହିଲା, ''ଏ ଦୁହେଁ ହେଉଛନ୍ତି ଡେନସ୍ ବୋଲି ଜଣେ ରାଜାଙ୍କର ଦୁଇଝିଅ । ଏମାନେ ଏପରି ଦୁଷ୍ଟା ଯେ ବିବାହ ଦିନ ରାତିରେ ନିଜ ନିଜ ସ୍ୱାମୀଙ୍କୁ ହତ୍ୟାକରିଥିଲେ । ସେହି ପାପପାଇଁ ଏମାନଙ୍କୁ ଏ ଦଣ୍ଡ ଦିଆଯାଉଛି ।''

ଅର୍ଫିୟସ୍‌ଙ୍କ ବୀଣାର ସ୍ୱର ଶୁଣି କିଛି ସମୟପାଇଁ ସେ ଦୁହେଁ ନିଜର ଦୁଃଖ ଭୁଲିଗଲେ ।

କିଛି ଦୂର ଯିବା ପରେ ଅର୍ଫିୟସ୍ ଦେଖିଲେ, ଜଣେ ଲୋକ ତାର ବେକ ପର୍ଯ୍ୟନ୍ତ ପାଣିରେ ଛିଡ଼ା ହୋଇଅଛି । ତାର ଠିକ୍ ମୁଣ୍ଡ ଉପରକୁ ପେନ୍ଥାଏ ପାଚିଲା ଅଙ୍ଗୁର କୋଳି ଝୁଲୁଛି । କିନ୍ତୁ ସେ ଅଙ୍ଗୁର କୋଳି ଖାଇବାପାଇଁ ହାତ ବଢ଼ାଇବା ମାତ୍ରେ ତାହା ଘୁଞ୍ଚିଯାଉଛି । ସେହିପରି ସେ ପାଣି ପିଇବାକୁ ମୁହଁ ବଢ଼ାଇଲା କ୍ଷଣି ପାଣି ପାଟି ପାଖରୁ ଦୂରକୁ ଚାଲିଯାଉଛି । ଏହାଫଳରେ ସେ ଖାଇପାରୁନାହିଁ କି ପିଇପାରୁନାହିଁ– ଭୋକ ଶୋଷରେ ଛଟପଟ ହେଉଛି । ଅର୍ଫିୟସ୍ ସେଠାରେ ଥିବା ଦୂତକୁ ପଚାରିଲେ, ''ଏ ଲୋକଟି କିଏ ? କାହିଁକି ଏହାକୁ ଏପରି ଦଣ୍ଡ ଦିଆଯାଉଛି ?'' ଦୂତ କହିଲା, ''ଏ ହେଉଛନ୍ତି ରାଜା ଟେଣ୍ଟାଲସ୍ । ସେ ଥିଲେ ଦେବରାଜ ଜିଅସ୍‌ଙ୍କର ପୁଅ । କିନ୍ତୁ ସେ ବିଶ୍ୱାସଘାତକତା କରି ପିତାଙ୍କର ଗୁପ୍ତକଥା ବାହାରେ ପ୍ରକାଶ କରିଦେଇଥିଲେ । ସେଥିପାଇଁ ତାଙ୍କୁ ଏପରି ଦଣ୍ଡ ଦିଆଯାଉଛି ।''

ଅର୍ଫିୟସ୍ ଇଉରିଡିସ୍‌ଙ୍କୁ ଖୋଜୁଥାନ୍ତି । କିଛି ଦୂର ଯିବା ପରେ ସେ ଗୋଟିଏ ପାହାଡ଼ ଦେଖିଲେ । ଆଶ୍ଚର୍ଯ୍ୟର କଥା ସେଠାରେ ରାଜା ସିସିଫସ୍‌ଙ୍କୁ ଦଣ୍ଡ ଦିଆଯାଉଥିଲା । ଗୋଟିଏ ପଥରକୁ ଠେଲି ଠେଲି ସେ ପାହାଡ଼ ଉପରକୁ ନେଉଥିଲେ । ପଥରଟି ସେଠାରୁ ପାହାଡ଼ ତଳକୁ ଗଡ଼ିଆସୁଥିଲା ଓ ତାଙ୍କୁ ପୁଣି ତାହା ପାହାଡ଼ ଉପରକୁ ଠେଲି ଠେଲି ନେବାକୁ ହେଉଥିଲା ।

ଏହିପରି ନାନା ନିଷ୍ଠୁର ଦୃଶ୍ୟ ଦେଖୁ ଦେଖୁ ଅର୍ଫିୟସ୍‌-ଗୋଟିଏ ଅନ୍ଧକାରମୟ କୋଠରି ଦେଖିଲେ । ସେଠାରେ ମୃତ୍ୟୁର ଦେବତା ପ୍ଲୁଟୋ ବସିଥିଲେ । ତାଙ୍କ ପାଖରେ ଥିଲେ ତାଙ୍କର ରାଣୀ ପର୍ସିଫୋନି । ଅର୍ଫିୟସ୍‌ଙ୍କୁ ଦେଖିଲାକ୍ଷଣି ପ୍ଲୁଟୋ ବିସ୍ମିତ ହୋଇ କହିଲେ, ''ତୁମେ ତ ମରିନାହଁ– ଏଠାକୁ ଆସିଲ କିପରି ? କଅଣପାଇଁ ଆସିଛ ?''

ଅର୍ଫିୟସ୍ ଅତି ବିନୀତଭାବରେ କହିଲେ, ''ମହାରାଜ, ମୁଁ ମୋର ସ୍ତ୍ରୀ ଇଉରିଡିସ୍‌କୁ ଖୋଜିବାକୁ ଆସିଛି । ଆପଣଙ୍କୁ ମୋର ପ୍ରାର୍ଥନା, ତାକୁ ମୋତେ ଫେରାଇ ଦିଅନ୍ତୁ ।''

ପ୍ଲୁଟୋ ଗମ୍ଭୀର ହୋଇ କହିଲେ, ''ତୁମର ପ୍ରାର୍ଥନା ମଞ୍ଜୁର କରିବା ଅସମ୍ଭବ । ଇଉରିଡିସ୍‌ର ମୃତ୍ୟୁ ହେବାରୁ ସେ ଏଠାକୁ ଆସିଛି । ଯିଏ ଏଠାକୁ ଆସେ ସେ ଆଉ ଫେରିଯାଇନପାରେ ।''

ଅର୍ଫିୟସ୍ ନିରାଶ ନହୋଇ କହିଲେ, ''ମହରାଜ, ମୁଁ ଇଉରିଡିସ୍‌କୁ ନପାଇଲେ ବଞ୍ଚି ପାରିବିନାହିଁ । ଆମେ ଦୁହେଁ ପରସ୍ପରକୁ କେତେ ଭଲପାଉଥିଲୁ ତାହା ଆପଣଙ୍କୁ ଜଣା । ଆମ ବିବାହର ବର୍ଷେ ସୁଦ୍ଧା ନପୂରୁଣୁ ଆପଣ ତାକୁ ନେଇଆସିଲେ । ଦୟାକରି ତାକୁ ମୋତେ ଫେରାଇ ଦିଅନ୍ତୁ । ପ୍ରେମ ଯେ କିପରି ତାହା ଆପଣ କଅଣ ଜାଣନ୍ତି ନାହିଁ ? ପର୍ସିଫୋନିଙ୍କୁ ପାଇବାପାଇଁ ଆପଣ କଅଣ କରିନାହାନ୍ତି ? ପର୍ସିଫୋନିଙ୍କ ବିନା ଆପଣଙ୍କର କି କଷ୍ଟ ହେବ ଥରେ ଅନୁମାନ କରନ୍ତୁ । ମୋତେ ଯଦି ଇଉରିଡିସ୍‌ଙ୍କୁ ନେବାପାଇଁ ଅନୁମତି ନଦିଅନ୍ତି, ତେବେ ମୋତେ ମଧ୍ୟ ଏଇଠାରେ ରଖନ୍ତୁ । ତାହାହେଲେ ମୁଁ ଏଠାରେ ଯେତେ କଷ୍ଟ ପାଇଲେ ସୁଦ୍ଧା ଇଉରିଡିସ୍‌ଙ୍କ ପାଖରେ ଥିବାରୁ ସବୁ ଦୁଃଖ ଭୁଲିଯିବି ।''

ପ୍ଲୁଟୋଙ୍କ ମନ ବଦଳି ଆସିଲା । ଏତିକିବେଳେ ଅର୍ଫିୟସ୍ ବୀଣା ବଜାଇ ମଧୁର ସ୍ୱରରେ ଗୀତ ଗାଇବା ଆରମ୍ଭ କରିଦେଲେ । ତାହା ଶୁଣି ପ୍ଲୁଟୋ ଓ ତାଙ୍କ ରାଣୀ ପର୍ସିଫୋନିଙ୍କ ଆଖିରୁ ଲୁହଧାର ବୋହିଗଲା । ପ୍ଲୁଟୋଙ୍କର କଠୋର ହୃଦୟ ତରଳିଗଲା । ସେ କୋମଳ ସ୍ୱରରେ କହିଲେ, ''ଅର୍ଫିୟସ୍, ମୁଁ ତୁମର ପ୍ରାର୍ଥନା ପୂରଣ କରିବି । ଇଉରିଡିସ୍ ତୁମ ସାଥିରେ ଫେରିଯିବ । କିନ୍ତୁ ଗୋଟିଏ କଥା ମନେରଖିଥାଅ । ତୁମେ ଆଗରେ ଯିବ; ଇଉରିଡିସ୍ ତୁମ ପଛେ ପଛେ ଯିବ । ତୁମେ ପାତାଳ ରାଜ୍ୟର ସୀମା ପାରି ହୋଇ ପୃଥିବୀ ଉପରକୁ ନଯିବା ପର୍ଯ୍ୟନ୍ତ ପଛକୁ ଅନାଇବନାହିଁ । ଯଦି ଚାହଁ ତେବେ ସେ ପୁଣି ଏଠାକୁ ଫେରିଆସିବ । ତୁମର ମୃତ୍ୟୁ ନହେବା ପର୍ଯ୍ୟନ୍ତ ତୁମ ଦୁହିଁଙ୍କର ଆଉ ଭେଟ ହେବନାହିଁ ।''

ଅର୍ଫିୟସ୍‌ଙ୍କର ଆନନ୍ଦ କହିଲେ ନସରେ । ସେ ଯେଉଁବାଟେ ଆସିଥିଲେ ସେହି ବାଟେ ଫେରିବାକୁ ଲାଗିଲେ । ପ୍ଲୁଟୋଙ୍କ ଆଦେଶରେ ଇଉରିଡିସ୍ ତାଙ୍କ ପଛେ ପଛେ

ଚାଲିଲେ । ଅର୍ଫିୟସ୍ କେବଳ ତାଙ୍କ ପାଦର ଶବ୍ଦ ଶୁଣୁଥାନ୍ତି, କେବେହେଲେ ପଛକୁ ଚାହୁଁନଥାନ୍ତି । କୁକୁର ସର୍ବେରସ ଫାଟକ ପାଖରେ ସେ ଦୁହିଁଙ୍କୁ ବାଟ ଛାଡ଼ିଦେଲା । ନାଉରି ନୌକାରେ ଦୁହିଁଙ୍କୁ ବସାଇ ଷ୍ଟିକ୍‌ସ ନଦୀ ପାର କରାଇଦେଲା । ଏଣିକି ପୃଥିବୀ ଉପରକୁ ଉଠିବାର କଥା । ଇଉରିଡିସ୍ ଟିକିଏ ପଛରେ ପଡ଼ିଗଲେ । ଅର୍ଫିୟସ୍ ତାଙ୍କ ପାଦର ଶବ୍ଦ ଶୁଣିପାରିଲେନାହିଁ । ତାଙ୍କର ଆଶଙ୍କା ହେଲା, ଇଉରିଡିସ୍ ଆସୁନାହାନ୍ତି ପରା ! ସେ ପ୍ଲୁଟୋଙ୍କର ଆଦେଶ ଭୁଲିଯାଇ ହଠାତ୍ ପଛକୁ ଚାହିଁଦେଲେ ।

ହାୟ ! ଅର୍ଫିୟସ୍ କି ଭୁଲ କଲେ ! ହଠାତ୍ ବିଜୁଳି ଖେଳିଗଲା, ଘଡ଼ଘଡ଼ିର ଗର୍ଜନ ଶୁଣାଗଲା । ଇଉରିଡିସ୍ ଦୁଃଖିତଭାବରେ କହିଲେ, ''ପ୍ରିୟ ଅର୍ଫିୟସ୍, ତୁମେ କି ସର୍ବନାଶ କଲ ! କାହିଁକି ପଛକୁ ଚାହିଁଲ ? ପ୍ଲୁଟୋଙ୍କର ଆଦେଶ ଅନ୍ୟଥା ହେବ ନାହିଁ । ମୁଁ ପାତାଳପୁରକୁ ଫେରିଯାଉଛି । ବିଦାୟ, ଚିର ବିଦାୟ ଅର୍ଫିୟସ୍ ।''

ଇଉରିଡିସ୍ କେଉଁଆଡ଼େ ଉଭେଇଗଲେ । ଅର୍ଫିୟସ୍ କାତର ହୋଇ ଚାରିଆଡ଼କୁ ଚାହିଁଲେ; କିନ୍ତୁ କୌଣସିଠାରେ ଇଉରିଡିସ୍‌ଙ୍କୁ ଦେଖିବାକୁ ପାଇଲେନାହିଁ । ବ୍ୟାକୁଳ ଭାବରେ ସେ ପୁଣି ପାତାଳ ପୁରକୁ ଯିବାକୁ ଚେଷ୍ଟା କଲେ; ମାତ୍ର ତାଙ୍କ ପାଦ ସେ ଆଡ଼କୁ ଚଳିଲା ନାହିଁ । ବାଧହୋଇ ସେ ଏକୁଟିଆ ପୃଥିବୀକୁ ଫେରିଆସିଲେ । ତାଙ୍କର ଏତେ ପରିଶ୍ରମ ବୃଥା ହେଲା । ଏଣିକି ସେ କେବଳ ବିଷାଦ ସଙ୍ଗୀତ ଗାଇ ଗାଇ ପୃଥିବୀଯାକ ବୁଲିବାକୁ ଲାଗିଲେ । ଅନେକବର୍ଷ ପରେ ତାଙ୍କର ମୃତ୍ୟୁ ହେବା ପରେ ସେ ଯାଇ ଇଉରିଡିସ୍‌ଙ୍କ ସହିତ ପୁଣି ମିଳିତହେଲେ ।

—

# ବେଲାରଫୋନ

କର୍ଣ୍ଥ ପ୍ରଦେଶ ରାଜାଙ୍କର ବେଲାରଫୋନ ନାମରେ ଏକ ପୁତ୍ର ଥିଲେ । ସେ ଯୌବନରେ ଉପସ୍ଥିତ ହେବାରୁ ରାଜା ତାଙ୍କୁ ଆର୍ଗସର ରାଜା ପ୍ରୋଟସ୍‌ଙ୍କ ନିକଟକୁ ପଠାଇଦେଲେ । ରାଜାଙ୍କର ବିଶ୍ୱାସ ଥିଲା ଯେ ବେଲାରଫୋନ ପ୍ରୋଟସଙ୍କ ଦରବାରରେ କିଛିକାଳ ରହି ରାଜ୍ୟଶାସନ ବିଷୟରେ ଜ୍ଞାନ ଲାଭ କରିପାରିବ ।

ବେଳାରଫୋନ ପ୍ରୋଟସଙ୍କ ନଗରରେ ବିଶିଷ୍ଟ ଅତିଥିରୂପେ ରହିଲେ । ରାଜପରିବାର ସହିତ ତାଙ୍କର ଘନିଷ୍ଠତା ଆସିଲା । କ୍ରମେ ପ୍ରୋଟସଙ୍କ ରାଣୀ ବେଲାରଫୋନଙ୍କ ପ୍ରତି ଆକୃଷ୍ଟ ହୋଇପଡ଼ିଲେ । ଦୁହିଁଙ୍କ ମଧ୍ୟରେ ପ୍ରେମଭାବ ଜାତ ହେଲା । କିଛି କାଳ ପରେ ପ୍ରୋଟସ ଏହି ଘଟଣା ଜାଣିପାରିଲେ । ସେ କ୍ରୋଧାନ୍ଧ ହୋଇ ବେଲାରଫୋନଙ୍କୁ ହତ୍ୟା କରିବାକୁ ଇଚ୍ଛା କଲେ । କିନ୍ତୁ ଜଣେ ବନ୍ଧୁରାଜାଙ୍କ ପୁତ୍ରକୁ ହତ୍ୟା କଲେ ତାହାର ପରିଣାମ ଭୟାବହ ହୋଇପାରେ । ତେଣୁ ସେ ନିଜର ଅଭିପ୍ରାୟ ଗୋପନ ରଖି ଅନ୍ୟ ଉପାୟରେ ବେଲାରଫୋନଙ୍କୁ ହତ୍ୟା କରିବାକୁ ଚେଷ୍ଟିତ ହେଲେ ।

ପ୍ରୋଟସଙ୍କର ପତ୍ନୀ ଥିଲେ ଲିସିଆର ରାଜା ଆଇଓବେଟସଙ୍କ କନ୍ୟା । ପ୍ରୋଟସ ବେଲାରଫୋନଙ୍କୁ ଲିସିଆକୁ ପଠାଇଦେଲେ ଓ ଶ୍ୱଶୁରଙ୍କୁ ଗୋପନରେ ସମ୍ବାଦ ଦେଲେ ଯେ, କୌଣସି ନା କୌଣସି ଉପାୟରେ ବେଲାରଫୋନଙ୍କୁ ହତ୍ୟା କରାଯିବ— କିନ୍ତୁ ସେଥିରେ ସେ କିମ୍ବା ପ୍ରୋଟସ ଜଡ଼ିତ ଥିବାର ଯେପରି କେହି ଜାଣିନପାରନ୍ତି ।

ବେଲାରଫୋନ ଆଇଓବେଟସଙ୍କ ରାଜପୁରରେ ରହିଲେ । ତାଙ୍କୁ ଆଦର ଗୌରବରେ କୌଣସି ତ୍ରୁଟି ନଥିଲା । କିନ୍ତୁ ଆଇଓବେଟସ ତାଙ୍କୁ ବଧ କରିବାର କୌଶଳ ଖୋଜୁଥାନ୍ତି । ଲିସିଆ ରାଜ୍ୟରେ ଗୋଟାଏ ଭୀଷଣ ଓ ଅଦ୍ଭୁତ ଜୀବ ଥିଲା । ଏହାର ନାମ କାଇମିରା । ଏହାର ମୁଣ୍ଡଟି ସିଂହର ମୁଣ୍ଡ ପରି ଓ ଗଣ୍ଡିଟି ଛେଳିର ଗଣ୍ଡିପରି । କୁମ୍ଭୀରର ଲାଞ୍ଜ ଭଳି ଏହାର ଏକ ପ୍ରକାଣ୍ଡ ଲାଞ୍ଜ ଥିଲା । ଗର୍ଜନ କଲାବେଳେ ଏହାର ପାଟିରୁ ନିଆଁ ବାହାରୁଥିଲା । ଏପରି ଭୀଷଣ ଜୀବ କେବେ ଦେଖାନଥିଲା । ଲିସିଆର ଲୋକେ ଏହାକୁ ଅତ୍ୟନ୍ତ ଭୟ କରୁଥିଲେ । ବେଳେ ବେଳେ ସେ ସହର ମଧ୍ୟକୁ ପଶିଆସି ଅନେକ ଲୋକ ମାରିପକାଉଥିଲା । ଗୃହପାଳିତ ଜୀବମାନଙ୍କୁ ଖାଇ-ଯାଉଥିଲା । ଲୋକେ ଏହାର ଅତ୍ୟାଚାରରେ ବ୍ୟତିବ୍ୟସ୍ତ ହେଉଥିଲେ । ଏହାକୁ ମାରିବାପାଇଁ ଅନେକ ଚେଷ୍ଟା କରାଗଲା ; କିନ୍ତୁ ଯେଉଁମାନେ ତାକୁ ମାରିବାକୁ ଗଲେ

ସେମାନେ ଶେଷରେ ତାର ଆହାର ହେଲେ । ଲିସିଆର ଲୋକେ ଏହି ରାକ୍ଷସତୁଲ୍ୟ ଜୀବର ନାମ ଦେଇଥିଲେ କାଇମିରା ।

ଆଇଓବେଟସଙ୍କୁ ଗୋଟାଏ ବୁଦ୍ଧି ଦେଖାଗଲା । ସେ ଭାବିଲେ, ''ବେଲାରଫୋନଙ୍କୁ କହିବି, ସେ କାଇମିରାକୁ ମାରିବାକୁ ଯାଉ । ତାହାହେଲେ କାଇମିରା ତାକୁ ମାରି ଖାଇବ । ମୁଁ ତାକୁ ମରାଇଛି ବୋଲି କେହି ସନ୍ଦେହ କରିବେନାହିଁ । ପ୍ରୋଟସ ମଧ୍ୟ ସନ୍ତୁଷ୍ଟ ହେବେ ।''

ସେ ଦିନେ ବେଲାରଫୋନଙ୍କୁ କହିଲେ, ''ମୁଁ ଦେଖୁଛି, ତୁମେ ଜଣେ ଅଦ୍ୱିତୀୟ ବୀର । ତୁମଭଳି ସାହସୀ ଓ ବଳବାନ୍ ବୀର ଯୁବକ ମୁଁ ଦେଖିନାହିଁ । ଆମ ଦେଶରେ କାଇମିରା ବୋଲି ଯେଉଁ ଜୀବଟା ଅଛି, ତାକୁ କେହି ମାରିପାରୁ ନାହାନ୍ତି । ତୁମେ ତାକୁ ମାରିବାକୁ ସମର୍ଥ, ଏଥିରେ ମୋର ସନ୍ଦେହନାହିଁ । ଆମ ରାଜ୍ୟ ଲୋକଙ୍କର ମଧ୍ୟ ସେହି ବିଶ୍ୱାସ । ତୁମେ ତାକୁ ମାରିଦେଲେ ସେମାନେ ଶାନ୍ତିରେ ରହିବେ । ସବୁଆଡ଼େ ତୁମର ମଧ୍ୟ ପ୍ରଶଂସା ହେବ ।''

ବେଲାରଫୋନ ପ୍ରକୃତରେ ସାହସୀ ଥିଲେ । କୌଣସି ବିପଦକୁ ତାଙ୍କର ଭୟ ନଥିଲା । ତେଣୁ ସେ ସହଜରେ ଆଇଓବେଟସଙ୍କ ପ୍ରସ୍ତାବରେ ରାଜି ହୋଇଗଲେ । କିନ୍ତୁ ସେ ରାଜ୍ୟରେ ଜଣେ ବଡ଼ ପଣ୍ଡିତ ଥିଲେ । କାଇମିରା ସହିତ ବଳ କଷିବା ପୂର୍ବରୁ ସେ ଥରେ ଉକ୍ତ ପଣ୍ଡିତଙ୍କ ପରାମର୍ଶ ନେବା ଉଚିତ ମନେକଲେ । ସେ କାଇମିରାକୁ ମାରିବାକୁ ଯିବେ ବୋଲି କହିବାରୁ ପଣ୍ଡିତ କହିଲେ, ଏଥିରେ ଯେ କି ବିପଦ ଅଛି ତାହା ତୁମେ ଜାଣନାହିଁ । ତାକୁ ମାରିବା ସହଜ ନୁହେଁ । ତୁମେ ଆଗ ଯାଇ ବୁଦ୍ଧିର ଦେବୀ ଏଥିନଙ୍କୁ ସନ୍ତୁଷ୍ଟ କର । ସେ ହେଲିକନ ପର୍ବତ ଉପରେ ରହନ୍ତି । କାଇମିରାକୁ ମାରିବାକୁ ହେଲେ ଏଥିନଙ୍କ ସାହାଯ୍ୟ ନିତାନ୍ତ ଦରକାର । ପେଗାସସ୍ ବୋଲି ଗୋଟିଏ ଘୋଡ଼ା ଅଛି । ତାର ଯୋଡ଼ିଏ ରୁପାର ଡେଣା ଅଛି । ସେ ଆକାଶରେ ମଧ୍ୟ ଉଡ଼ିପାରେ । ତା ଉପରେ ନବସିଲେ ତୁମେ କାଇମିରାକୁ ମାରିପାରିବନାହିଁ । ପ୍ରଥମେ ତୁମେ ହେଲିକନରେ ଏଥିନଙ୍କୁ ପ୍ରାର୍ଥନାକରି ସନ୍ତୁଷ୍ଟ କର । ସେ ପ୍ରସନ୍ନ ହେଲେ ତୁମର ଉଦ୍ଦେଶ୍ୟ ସଫଳ ହୋଇପାରିବ ।

ପଣ୍ଡିତଙ୍କ ଉପଦେଶ ଅନୁସାରେ ବେଲାରଫୋନ ହେଲିକନ ପର୍ବତକୁ ଗଲେ ଓ ରାତିଯାକ ମନ୍ଦିରରେ ବସି ଏକଧ୍ୟାନରେ ଏଥିନ ଦେବୀଙ୍କୁ ପ୍ରାର୍ଥନା କଲେ । ଦେବୀ ତାଙ୍କ ଉପରେ ସନ୍ତୁଷ୍ଟ ହେଲେ । ସକାଳେ ସେ ହାତରେ ଗୋଟିଏ ସୁନାର ଲଗାମ ଓ ଜିନ୍ ଧରି ବେଲାରଫୋନଙ୍କୁ କହିଲେ, ''ବତ୍ସ, ତୋ ପ୍ରାର୍ଥନାରେ ମୁଁ ସନ୍ତୁଷ୍ଟ । ମୁଁ ତୋତେ ସାହାଯ୍ୟ କରିବି । ପ୍ରଥମେ ତୋର ପେଗାସସ୍ ଘୋଡ଼ା ଦରକାର । ସେ ପ୍ରତିଦିନ ସକାଳେ ହିପୋକ୍ରିନ ନଦୀକୁ ପାଣି ପିଇବାକୁ ଆସେ । ତୁ ନଦୀ କୂଳରେ

ଅପେକ୍ଷା କରି ରହିଥିବୁ । ପେଗାସସ୍ ଆସିଲେ ତାହାଠାରେ ଏହି ଲଗାମ ଓ ଜିନ୍ ଲଗାଇଦେବୁ । ତେଣିକି ସେ ତୋର ବଶ ହୋଇଯିବ ଓ ତୁ ଯାହା କହିବୁ ସେ ତାହା କରିବ ।''



ବେଲାରଫୋନ ଦେବୀଙ୍କଠାରୁ ଜିନ୍ ଓ ଲଗାମଟି ନେଇ ହିପୋକ୍ରିନ ନଦୀ କୂଳରେ ଜଗିରହିଲେ । ସକାଳେ ସୂର୍ଯ୍ୟ ଉଦୟ ହେବାର କିଛି ସମୟ ପରେ ସେ ଆକାଶରେ ଗୋଟାଏ ଶବ୍ଦ ଶୁଣିଲେ । ନଦୀର ସ୍ୱଚ୍ଛ ଜଳ ଉପରେ ପେଗାସସ୍‌ର ଛାୟା ପଡ଼ିଲା । ସେ ଉପରକୁ ଚାହିଁ ପେଗାସସ୍‌କୁ ଦେଖିଲେ । ଘୋଡ଼ା ଯେ ଏତେ

ସୁନ୍ଦର ହୋଇପାରେ, ସେ ଧାରଣା ତାଙ୍କର ନଥିଲା । ଦେହଟି ସୁନା ପରି ଚକ୍‌ଚକ୍ କରୁଛି । ଦୁଇ ପାଖରେ ରୁପାର ଡେଣା; ସୂର୍ଯ୍ୟକିରଣ ପଡ଼ିବାରୁ ପେଗାସସ୍ ଏତେ ଉଜ୍ଜ୍ୱଳ ଦିଶୁଥିଲା ଯେ ତାଙ୍କ ଆଖି ଝଲସିଗଲା । ସେ ଲୁଚି ଛିଡ଼ାହୋଇ ରହିଲେ । ପେଗାସସ୍ ପାଣି ପିଇସାରି କୂଳକୁ ଆସିବାରୁ ବେଲାରଫୋନ ତାହା ନିକଟକୁ ଗଲେ । ଆଶ୍ଚର୍ଯ୍ୟର କଥା ତାଙ୍କ ହାତରେ ସୁନାର ଲଗାମ୍ ଓ ଜିନ୍ ଦେଖିଲାକ୍ଷଣି ସେ ଚୁପ୍‌କରି ଛିଡ଼ାହେଲା । ସେ ତା ମୁହଁରେ ଲଗାମ ଲଗାଇ ପିଠି ଉପରେ ଜିନ୍ ପକାଇଦେଲେ ।

ତାହାପରେ ସେ ପେଗାସସ୍ ଉପରେ ବସିପଡ଼ି କହିଲେ, "ବନ୍ଧୁ, କାଇମିରା ଯେଉଁଠାରେ ଅଛି ମୋତେ ସେହିଠାକୁ ନେଇଯାଅ ।" ପେଗାସସ୍ ଉପରକୁ ଉଠି ଉଡ଼ିବାକୁ ଲାଗିଲା । ବେଲାରଫୋନଙ୍କୁ ଆଶ୍ଚର୍ଯ୍ୟ ଲାଗୁଥାଏ; କିନ୍ତୁ ସେ ଭୟ ନକରି ଦୃଢ଼ ହୋଇ ବସିଲେ । କିଛି ସମୟ ପରେ ଘୋଡ଼ା ଆଉ ନଉଡ଼ି ସ୍ଥିର ହୋଇ ଶୂନ୍ୟରେ ରହିଲା । ଏବେ ବେଲାରଫୋନ କାଇମିରାର ଭୀଷଣ ରୂପ ଦେଖିପାରିଲେ । ସେ ଖଣ୍ଡାଧରି ପ୍ରସ୍ତୁତ ହୋଇଗଲେ ।

ପେଗାସସ୍ ତଳକୁ ଓହ୍ଲାଇ ଆସିଲା ଓ ବେଲାରଫୋନ କାଇମିରାକୁ ଖଣ୍ଡାରେ ପ୍ରହାର କଲେ । କାଇମିରା ବେଲାରଫୋନ ଓ ପେଗାସସ୍ ଦୁହିଁଙ୍କୁ ଟାଣିନେବାକୁ ଚେଷ୍ଟା କଲା । କିନ୍ତୁ ପେଗାସସ୍ ଏତେ ଦ୍ରୁତଗତିରେ ପୁଣି ଉପରକୁ ଉଠିଗଲା ଯେ ତାର ସବୁ ଚେଷ୍ଟା ବ୍ୟର୍ଥ ହେଲା । ଏହିପରି ବେଲାରଫୋନ ଅନେକ ବାର ତଳକୁ ଆସି କାଇମିରାକୁ ଖଣ୍ଡାରେ ଆଘାତ କଲେ । କେତେ ସମୟ ପରେ କାଇମିରା ନିହତ ହେଲା ।

ଆଇଓବେଟ୍‌ସ ମନେକରିଥିଲେ ଯେ ବେଲାରଫୋନ କାଇମିରା ହାତରେ ମରିବ । କିନ୍ତୁ ତା ପରିବର୍ତ୍ତେ ସେ କାଇମିରାକୁ ମାରି ଆସିଥିବାର ଦେଖି ସେ ଆନନ୍ଦିତ ହେଲେ । ତାଙ୍କର ମନ ବଦଳିଗଲା । ଲିସିଆ ରାଜ୍ୟରେ ଲୋକେ କାଇମିରାର ଉତ୍ପାତରୁ ରକ୍ଷା ପାଇ ଶତମୁଖରେ ବେଲାରଫୋନଙ୍କର ପ୍ରଶଂସା କଲେ । ରାଜା ଆଇଓବେଟ୍‌ସଙ୍କର ଗୋଟିଏ ସୁନ୍ଦରୀ ଝିଅ ଥିଲା । ତାକୁ ସେ ବେଲାରଫୋନଙ୍କ ସହିତ ବିବାହ କରାଇଦେଲେ ।

ବେଲାରଫୋନଙ୍କ ଜୀବନ ସୁଖମୟ ହେଲା । ପେଗାସସ୍ ସାହାଯ୍ୟରେ ସେ ତାଙ୍କର ଶତ୍ରୁମାନଙ୍କୁ ବିନାଶ କଲେ । କେହି ତାଙ୍କ ବିରୁଦ୍ଧରେ ପଦେ କହିବାକୁ ସୁଦ୍ଧା ସାହସ କଲେନାହିଁ । ସବୁଠାରେ ତାଙ୍କର ଜୟଜୟକାର ଶୁଣାଗଲା । କ୍ରମେ ବେଲାରଫୋନ ଭାବିଲେ, 'ଜଗତରେ ମୋଠାରୁ ବଡ଼ କେହିନାହିଁ ।' ଏପରିକି ସେ ଦେବତାମାନଙ୍କୁ ସୁଦ୍ଧା ଖାତିର କଲେନାହିଁ । ଦେବତାମାନେ ତାଙ୍କର ଗର୍ବ ସହି ନ

ପାରି ଦେବରାଜ ଜିଅସ୍‌ଙ୍କୁ ସମସ୍ତ ଘଟଣା କହିଲେ । ଦେବରାଜ କହିଲେ, ''ତୁମେମାନେ ଚିନ୍ତା କରନାହିଁ । ମୁଁ ତାର ଗର୍ବ ଭାଙ୍ଗିଦେବି ।''

ବେଲାରଫୋନ ପେଗାସସ୍ ଉପରେ ବସି ଆକାଶ ମାର୍ଗରେ ଉଡ଼ି ଯାଉଥିଲେ । ଜିଅସ୍ ଗୋଟିଏ ବିରୁଡ଼ିକୁ ଛାଡ଼ିଦେଇ କହିଲେ, ''ଯାଆ, ତୁ ପେଗାସସ୍‌କୁ ନାହୁଡ଼ରେ ବିନ୍ଧିଦେବୁ ।'' ବିରୁଡ଼ି ସେହିପରି କଲା । ପେଗାସସ୍ ଯନ୍ତ୍ରଣାରେ ଛଟପଟ ହୋଇ ବେଲାରଫୋନଙ୍କୁ ପିଠିରୁ ଫିଙ୍ଗିଦେଲା । ସେ ତଳେ ପଡ଼ିଗଲେ । ଏହା ଫଳରେ ତାଙ୍କର ଆଖି ଦୁଇଟି ଫୁଟିଗଲା ଓ ଗୋଡ଼ହାତ ଭାଙ୍ଗିଗଲା । ବେଲାରଫୋନ ନିଜ ଗର୍ବର ଫଳ ପାଇଲେ । ମୃତ୍ୟୁପର୍ଯ୍ୟନ୍ତ ସେ ଅନ୍ଧ, ଛୋଟା ଓ କେମ୍ପା ହୋଇ ବହୁ କଷ୍ଟ ଭୋଗକଲେ ।

—

# ଫିଟନ

ସୂର୍ଯ୍ୟଦେବତା ଆପୋଲୋ କ୍ଲିମିନ ବୋଲି ଜଣେ କିନ୍ନରୀକୁ ବିବାହ କରିଥିଲେ । ଏହି କ୍ଲିମିନଙ୍କ ଗର୍ଭରୁ ଆପୋଲୋଙ୍କର ଏକ ପୁଅ ଜନ୍ମ ହେଲା । ତାହାର ନାମ ଫିଟନ । ସୂର୍ଯ୍ୟଦେବତା ପ୍ରତିଦିନ ସକାଳେ ରଥରେ ବସି ଆକାଶ ପରିକ୍ରମା କରନ୍ତି । ସକାଳେ ପୂର୍ବଦିଗରେ ସୂର୍ଯ୍ୟଦେବତା ଦେଖାଦେଲାକ୍ଷଣି କ୍ଲିମିନ ପୁଅକୁ କହନ୍ତି, ''ଆରେ ଫିଟନ, ଦେଖ, ତୋର ବାପା ଆପୋଲୋ ରଥରେ ବସି ଆକାଶ ପରିକ୍ରମାରେ ବାହାରିଲେଣି ।''

ଫିଟନ ବଡ଼ ହେବାରୁ ତା ମନରେ ଭାରି ଗର୍ବ ହେଲା । ସେ ଭାବିଲା, 'ମୋର ବାପା ହେଉଚନ୍ତି ସୂର୍ଯ୍ୟଦେବତା । ଅନ୍ୟ କେହି ତାଙ୍କର ସମାନ ହେବେନାହିଁ ।' ତାର ସାଙ୍ଗସାଥୀମାନଙ୍କୁ ସେ ଏହି କଥା କହିଲା । କୌଣସି କୌଣସି ପିଲା ତା କଥାକୁ ହସରେ ଉଡ଼ାଇଦେଲେ । କେହି କେହି ତା କଥାକୁ ଆଦୌ ବିଶ୍ୱାସ କଲେନାହିଁ । ସାଙ୍ଗପିଲାଙ୍କର ଏଭଳି କଥାରେ ତା' ମନରେ ଦୁଃଖ ହେଲା । ସେ ଭାବିଲା, ''ଯାଏଁ, ବାପା ଆପୋଲୋଙ୍କୁ ଏ ଦୁଷ୍ଟ ପିଲାଙ୍କ କଥା କହିବି । ସେ ଏମାନଙ୍କୁ ସତ କଥା ବୁଝାଇଦେଇପାରିବେ ।' ସେ ମାଆଙ୍କୁ କହିଲା, ''ମାଆ, ମୋ ବାପାଙ୍କ ଘର କେଉଁଠି ? ତାଙ୍କ ପାଖକୁ ଯିବି ।'' କ୍ଲିମିନ କହିଲେ, ''ପୂର୍ବଦିଗରେ ଯେଉଁ ଆକାଶ ଦିଶୁଛି ସେଇ ହେଉଛି ତୋର ବାପାଙ୍କ ଘର ।''

ଫିଟନ ପୂର୍ବଦିଗକୁ ମୁହଁକରି ଚାଲିଲା । ସକାଳ ହୋଇଗଲେ ଆପୋଲୋ ଚାଲିଯିବେ । ତା ପୂର୍ବରୁ ପହଞ୍ଚିବାପାଇଁ ସେ ଖୁବ୍ ବେଗରେ ଚାଲିଲା । ଯାହାହେଉ ସେ ଆପୋଲୋଙ୍କ ଘରେ ପହଞ୍ଚିଲା । ବାପା ତାକୁ ଖୁବ୍ ଆଦର କଲେ । ପୁଅ ତାର ମନଦୁଃଖ କଥା କହିଲା । ଆପୋଲୋ କହିଲେ, ''ତୁ ମୋର ପୁଅ । ଲୋକଙ୍କର ବିଶ୍ୱାସ ଜନ୍ମାଇବାପାଇଁ ତୁ ଯାହା କହିବୁ ମୁଁ ନିଶ୍ଚୟ କରିବି ।''

ଫିଟନ କହିଲା, ''ମୁଁ ତୁମ୍ କୋଳରେ ରଥ ଉପରେ ବସିବି । ମୁଁ ରଥକୁ ଚଳାଇବି । ଏହା ଦେଖି ସମସ୍ତେ ଜାଣିଯିବେ ଯେ ମୁଁ ତୁମର ପୁଅ ।''

ଆପୋଲୋ ଏଥିରେ ରାଜି ହେଲେ । ଆରଦିନ ସକାଳେ ସେ ରଥରେ ବସିଲେ । ଫିଟନ ତାଙ୍କ କୋଳରେ ବସି ରଥ ଚଳାଇଲା । ସେ ବାପାଙ୍କୁ କହିଲା, ''ତଳେ ଯେଉଁ ପିଲାଗୁଡ଼ାକ ଅଛନ୍ତି ସେମାନେ ଏବେ ମୋତେ ଦେଖି ନିଶ୍ଚୟ ସ୍ୱୀକାର କରିବେ ଯେ ମୁଁ ତୁମରି ପୁଅ ।''

ଆପୋଲୋଙ୍କ ରଥର ଘୋଡ଼ାଗୁଡ଼ାକ ଅମାନିଆ । ଟାଣୁଆ ସାରଥି ନଥିଲେ ସେମାନଙ୍କୁ ଜବତ କରିବା କଠିନ । ଆପୋଲୋ ଦେଖିଲେ, ଫିଟନ ଘୋଡ଼ାମାନଙ୍କୁ ଠିକ୍ ଚଳାଇପାରୁ ନାହିଁ । ସେ କହିଲେ, ''ପୁଅ, ତୁ ଏ ଘୋଡ଼ାମାନଙ୍କୁ ଚଳାଇପାରିବୁନାହିଁ । ଏଣିକି ମୁଁ ଚଳାଏଁ ।'' କିନ୍ତୁ ଫିଟନର ଏକା ଜିଦ୍, ସେ ରଥ ଚଳାଇବ । ଆପୋଲୋ କହିଲେ, ''ଯେବେ ରଥ ଚଳାଇବାକୁ ମନକରୁଛୁ ତେବେ ମୋ କଥା ମାନି ଚଳ । ଘୋଡ଼ାଙ୍କ ଉପରେ କେବେହେଲେ ଛାଟ ମାରିବୁନାହିଁ । ଛାଟ ବାଜିଲେ ସେମାନେ ରଥକୁ ଅବାଟକୁ ନେଇଯିବେ ।''

ବାପାଙ୍କ କଥା ମାନି ଫିଟନ କିଛି ଦୂର ଯାଏ ରଥ ଧୀରେ ଧୀରେ ଚଳାଇଲା । କିନ୍ତୁ କିଛି ସମୟ ପରେ ସେ ବାପାଙ୍କ ଉପଦେଶ ଭୁଲିଯାଇ ଘୋଡ଼ାମାନଙ୍କୁ ଛାଟରେ ପିଟିଦେଲା । ରଥ ପବନ ବେଗରେ ତଳକୁ ତଳକୁ ଚାଲିଲା । ପୃଥିବୀର ଅତି ନିକଟରେ ରଥ ପହଞ୍ଚିବାରୁ ପୃଥିବୀର ବୃକ୍ଷଲତା ସବୁ ପୋଡ଼ିଗଲା । ସୂର୍ଯ୍ୟଙ୍କର ଅସହ୍ୟ ତେଜରେ ଲୋକେ ଛଟପଟ ହେବାକୁ ଲାଗିଲେ । ଆପୋଲୋ କହିଲେ, ''ଦେଖିଲୁ, ମୋ କଥା ନମାରିବାରୁ କଅଣ ହେଲା ? ଏବେ ଶୀଘ୍ର ରଥ ଉପରକୁ ନେଇଚାଲ ।'' ଫିଟନ ରଥକୁ ଉପରକୁ ଚଲାଇଲା । କିନ୍ତୁ ରଥ ଏତେ ଉପରକୁ ଚାଲିଗଲା ଯେ ପୃଥିବୀର କୌଣସିଠାରେ ସୂର୍ଯ୍ୟଙ୍କର ଆଲୁଅ ପଡ଼ିପାରିଲାନାହିଁ । ପୃଥିବୀ ଉପରଯାକ ବରଫ ପଡ଼ିଗଲା । ଶୀତରେ ଲୋକେ ଥୁରୁ ଥୁରୁ ହେଲେ ।

ଦେବରାଜ ଜିଅସ୍ ସେତେବେଳେ ଶୋଇଥିଲେ । ଲୋକେ ବିକଳ ହୋଇ ତାଙ୍କୁ ଡାକିଲେ, ହେ ପ୍ରଭୁ ! ଆମକୁ ସୂର୍ଯ୍ୟଙ୍କ ହାତରୁ ରକ୍ଷାକର । ସେ କେତେବେଳେ ଆମକୁ ପୋଡ଼ି ମାରୁଛନ୍ତି ତ କେତେବେଳେ ବରଫରେ ପୋତି ପକାଉଛନ୍ତି । ଲୋକଙ୍କର କାତର ପ୍ରାର୍ଥନାରେ ଜିଅସ୍‌ଙ୍କର ନିଦ ଭାଙ୍ଗିଗଲା । ସେ ଆଖିମେଲି ସୂର୍ଯ୍ୟଙ୍କଆଡ଼କୁ ଚାହିଁଲେ । ଦେଖିଲେ ଆପୋଲୋ ନିଜେ ଚଳାଉନାହାନ୍ତି; ଗୋଟାଏ ଟୋକା ତାଙ୍କ କୋଳରେ ବସି ରଥ ଚଳାଉଅଛି । ସେ ରାଗରେ ନିଜର ବଜ୍ରକୁ ଫିଟନ ଉପରକୁ ଫିଙ୍ଗିଦେଲେ । ଫିଟନର ପ୍ରାଣ ବାହାରିଗଲା । ଆପୋଲୋ କାନ୍ଦି କାନ୍ଦି ରଥ ଫେରାଇ ନିଜ ଘରକୁ ଚାଲିଗଲେ । କିନ୍ତୁ ଫିଟନ ନିଜ ଗର୍ବର ଫଳ ଭୋଗି ମଲା ।

—

# ହିରୋ ଓ ଲିଣ୍ଡର

ଆଫ୍ରୋଡାଇଟ୍ ହେଉଛନ୍ତି ସୌନ୍ଦର୍ଯ୍ୟର ଦେବୀ । ତାଙ୍କର ମନ୍ଦିର ଥିଲା ସମୁଦ୍ର କୂଳରେ ସେଷ୍ଟସ ସହରରେ । ଦେବୀଙ୍କର ପୂଜା ଅର୍ଚ୍ଚନା କରିବା ନିମନ୍ତେ ହିରୋ ବୋଲି ଗୋଟିଏ ପୂଜାରିଣୀ ନିଯୁକ୍ତ ଥିଲା । ହିରୋ ଏକୁଟିଆ ସେହି ମନ୍ଦିରରେ ରହୁଥିଲା । ତାର ବୟସ ବେଶୀ ନଥିଲା । ଯୌବନରେ ପହଞ୍ଚି ସେ ଅତି ସୁନ୍ଦରୀ ଦେଖାଯାଉଥିଲା । ମନ୍ଦିରରେହିଁ ତାର ଦିନ କଟିଯାଉଥିଲା ।

ସେଷ୍ଟସ୍‌ଠାରୁ କିଛି ଦୂରରେ ଏବିଡସ ସହର । ଏବିଡସ ଓ ସେଷ୍ଟସ ମଧ୍ୟରେ ସମୁଦ୍ର । ଏହାର ନାମ ହେଲିସପଣ୍ଟ ପ୍ରଣାଳୀ । ଏହି ପ୍ରଣାଳୀକୁ ପାର ହେବା ସହଜ ନଥିଲା । ଏଥିରେ କେତେକ ବୁଡ଼ାପାହାଡ଼ ଥିଲା । କେହି ନୌକାରେ ଆସିଲେ ତାହା ପାହାଡ଼ରେ ବାଜି ଧ୍ୱଂସ ହୋଇଯାଉଥିଲା ।

ଏବିଡସ ସହରରେ ଲିଣ୍ଡର ବୋଲି ଜଣେ ଯୁବକ ଥିଲେ । ସେ ଥରେ ସମୁଦ୍ର ପାରହୋଇ ଆଫ୍ରୋଡାଇଟ୍‌ଙ୍କ ମନ୍ଦିରକୁ ଯାଇଥିଲା । ସେଠାରେ ସେ ହିରୋକୁ ଦେଖିବାକୁ ପାଇଲା । ହିରୋ ଅତି ସୁନ୍ଦରୀ । ଲିଣ୍ଡର ମଧ୍ୟ ଜଣେ ସୁନ୍ଦର ଯୁବକ । ଦୁହେଁ ଦୁହିଁଙ୍କୁ ଭଲପାଇବସିଲେ । ଦୁହିଁଙ୍କ ମଧ୍ୟରେ ବିଚାର ହେଲା, କିପରି ପ୍ରତିଦିନ ସେମାନଙ୍କର ଭେଟ ହୋଇପାରିବ । ଲିଣ୍ଡର କହିଲା, ‘‘ଗୋଟିଏ କଥା କରାଯାଉ ? ମୁଁ ଖୁବ୍ ଭଲ ପହଁରିପାରେ । ପ୍ରତିଦିନ ସନ୍ଧ୍ୟାରେ ମୁଁ ସମୁଦ୍ର ପହଁରି ଏକ ମନ୍ଦିରକୁ ଆସିପାରିବି । ମାତ୍ର ଏଥିରେ ଗୋଟିଏ ଅସୁବିଧା ଅଛି । ରାତିରେ ଦିଗ ଠିକ୍ କରି ନପାରିଲେ କିପରି ଆସିବି ?’’

ହିରୋ କହିଲା, ‘‘ସେଥିପାଇଁ ଚିନ୍ତାନାହିଁ । ପ୍ରତିଦିନ ସନ୍ଧ୍ୟାବେଳକୁ ମୁଁ ମନ୍ଦିର ଉପରେ ଗୋଟିଏ ଦୀପ ରଖିଦେବି । ତୁମେ ଏବିଡସ ସହରରୁ ତାର ଆଲୁଅ ଦେଖିପାରିବ । ସେହି ଆଲୁଅକୁ ଚାହିଁ ତୁମେ ପହଁରିଲେ ବାଟ ଭୁଲିବନାହିଁ ।’’

ଏହିପରି କେତେଦିନ ଗଲା । ହିରୋ ମନ୍ଦିର ଉପରେ ଦୀପ ରଖିଦିଏ । ସେହି ଦୀପର ଆଲୁଅକୁ ଚାହିଁ ଚାହିଁ ଲିଣ୍ଡର ପହଁରିଆସେ । ଦୁହିଁଙ୍କର ମିଳନ ହୁଏ । ଥରେ ଅନ୍ଧାର ପକ୍ଷ ହୋଇଥାଏ । ହିରୋ ମନ୍ଦିର ଉପରେ ଦୀପଟି ରଖିଦେଇ ଲିଣ୍ଡରକୁ ଚାହିଁ ରହିଲା । କିନ୍ତୁ ଦୈବାତ୍ ଝଡ଼ ପବନ ବହିବାରୁ ଦୀପଟି ଲିଭିଗଲା । ସେ କଥା ହିରୋ ଦେଖିପାରି ନଥିଲା । ଏଣେ ଲିଣ୍ଡର ସମୁଦ୍ର ମଝିରେ । ଆଲୁଅ ଦେଖିନପାରି ସେ

କେଉଁ ଆଡ଼କୁ ଯିବ ସ୍ଥିର କରିପାରିଲାନାହିଁ । ଏଣେତେଣେ ପହଁରି ତାର ହାତ ଗୋଡ଼ ଚଳିଲାନାହିଁ । ଶେଷରେ ସେ ପାଣିରେ ବୁଡ଼ି ମଲା ।

ରାତିଯାକ ହିରୋ ଚାହିଁରହିଲା — କିନ୍ତୁ ଲିଣ୍ଡର ଆସିଲାନାହିଁ । ଏତିକିବେଳେ ଦୀପ ଲିଭିଯାଇଥିବା କଥା ତାର ମନେପଡ଼ିଲା । ସେ ସମୁଦ୍ର କୂଳକୁ ଦଉଡ଼ିଲା । ସେତେବେଳକୁ ଲିଣ୍ଡରର ଶବ ସମୁଦ୍ରରେ ଲହରୀରେ ଭାସି ଭାସି କୂଳରେ ଲାଗିଥିଲା । ତାହା ଦେଖି ହିରୋ ମନ ଦୁଃଖରେ କାନ୍ଦିବାକୁ ଲାଗିଲା । ସେ ଭାବିଲା, ''ମୋରି ଦୋଷରୁ ଲିଣ୍ଡର ମଲା । ଦୀପ ଲିଭିଗଲା ବେଳେ ମୁଁ ଜଗି ରହି ଆଉ ଗୋଟାଏ ଦୀପ ଲଗାଇଦେଇଥିଲେ ଲିଣ୍ଡର ଏପରି ପ୍ରାଣ ହରାଇ ନଥାନ୍ତା । ଏବେ ଲିଣ୍ଡର ବିନା ମୋ ବଞ୍ଚିବାରେ କି ଲାଭ ?''

ଏହିପରି ବିଚାରି ସେ ମନ୍ଦିର ଶିଖରକୁ ଚଢ଼ିଯାଇ ସମୁଦ୍ରକୁ ଡେଇଁପଡ଼ିଲା । ସ୍ୱର୍ଗରେ ସେ ଦୁହିଁଙ୍କର ନିଶ୍ଚୟ ମିଳନ ହୋଇଥିବ ।

—

# ଆଟଲାଣ୍ଟା

ଗ୍ରୀସ୍‌ଦେଶର କାଲିଡନ ସହରରେ ଗୋଟିଏ ଝିଅ ଥିଲା; ତାର ନାମ ଆଟଲାଣ୍ଟା । ସେ ଥିଲା ଅପୂର୍ବ ସୁନ୍ଦରୀ । ତାହାଛଡ଼ା ସେ ପିଲାଦିନୁ ବାଳକମାନଙ୍କ ସହିତ ଅସ୍ତ୍ରବିଦ୍ୟା ଶିକ୍ଷା କରିଥିଲା । ଯୌବନରେ ଉପସ୍ଥିତ ହେଲା ବେଳକୁ ସେ ଯୁବକସୁଲଭ ଶିକାର, ଦୌଡ଼, ଅସ୍ତ୍ରଚାଳନା ପ୍ରଭୃତିରେ ବିଶେଷ କୃତିତ୍ୱ ଅର୍ଜନ କରିଥିଲା । ପ୍ରଧାନତଃ ଦୌଡ଼ିବାରେ ତାହାର ସମକକ୍ଷ ଅନ୍ୟ କେହି ନଥିଲେ । ଦୌଡ଼ ଓ ଶରଚାଳନାରେ ତାର ଏହି କୃତିତ୍ୱ ଲାଗି ସମସ୍ତେ ତାର ପ୍ରଶଂସା କରୁଥିଲେ

ଗ୍ରୀସ୍‌ର ଶତ ଶତ ଯୁବକ ଏହି କନ୍ୟାକୁ ବିବାହ କରିବାର ଇଚ୍ଛା ପ୍ରକାଶ କଲେ । ଏହା ଜାଣି ସେ ପ୍ରତିଜ୍ଞା କଲା ଯେ ଯେଉଁ ଯୁବକ ତାକୁ ଦୌଡ଼ ପ୍ରତିଯୋଗିତାରେ ପରାସ୍ତ କରିପାରିବ, ତାକୁହିଁ ସେ ବିବାହ କରିବ । ପୁଣି ଯେଉଁ ପ୍ରତିଯୋଗୀ ତା ନିକଟରେ ପରାଜିତ ହେବ, ତାର ମସ୍ତକଛେଦନ କରାଯିବ । ଏହାଦ୍ୱାରା ଆଟଲାଣ୍ଟା ପ୍ରତି ତାର ପ୍ରଣୟ ଜଣାପଡ଼ିବ । ଏହି ଭୀଷଣ ସର୍ତ୍ତ ଶୁଣି ଅନେକ ପଛଘୁଞ୍ଚା ଦେଲେ । ତଥାପି ଯେଉଁ ଯୁବକମାନେ ଆଟଲାଣ୍ଟାକୁ ଲାଭ କରିବାପାଇଁ ଜୀବନ ପଣ କରି ପ୍ରତିଯୋଗିତାରେ ଯୋଗଦେବାକୁ ବାହାରିଲେ ସେମାନଙ୍କ ସଂଖ୍ୟା ନିତାନ୍ତ କମ୍ ନଥିଲା । ସେମାନେ ମନେକରୁଥିଲେ ଯେ ଆଟଲାଣ୍ଟା ଭଳି ସୁନ୍ଦରୀକୁ ଲାଭ କରିବାପାଇଁ ଯେ କୌଣସି ତ୍ୟାଗ କରିବାକୁ ପ୍ରସ୍ତୁତ ହେବା ଉଚିତ ।

ଦୌଡ଼ ପ୍ରତିଯୋଗିତା ନିମନ୍ତେ ଗୋଟିଏ ସ୍ଥାନ ସ୍ଥିର ହେଲା । କେଉଁଠାରୁ ଦୌଡ଼ ଆରମ୍ଭ ହେବ ଓ କେଉଁଠାରେ ଶେଷ ହେବ, ତାହା ଚିହ୍ନିତ କରାଗଲା । ପ୍ରତିଯୋଗିତା ନିମନ୍ତେ ନିର୍ଦ୍ଧାରିତ ସମୟରେ ସହସ୍ର ସହସ୍ର ଦର୍ଶକ ଉପସ୍ଥିତ ହେଲେ । ପ୍ରତିଯୋଗୀ ଓ ଆଟଲାଣ୍ଟା ଦୌଡ଼ିଲେ; ଆଟଲାଣ୍ଟା ପ୍ରତିଯୋଗୀଙ୍କୁ ହରାଇବାରୁ ତାଙ୍କର ଶିରଛେଦନ କରାଗଲା ।

ଏହିପରି କେତେ ଯୁବକ ଆଟଲାଣ୍ଟାଙ୍କ ସହ ଦୌଡ଼ ପ୍ରତିଯୋଗିତାରେ ହାରିଯାଇ ପ୍ରାଣଦେଲେ । ଦିନେ ଏହିପରି ପ୍ରତିଯୋଗିତା ଚାଲିଥିଲାବେଳେ ଦର୍ଶକମାନଙ୍କ ଭିତରେ ଜଣେ ଯୁବକ ଥିଲେ । ଆଟଲାଣ୍ଟା ଦୌଡୁଥିଲାବେଳେ ତାଙ୍କର ଅପୂର୍ବ ସୌନ୍ଦର୍ଯ୍ୟ ଦେଖି ସେ ଏକବାରେ ମୁଗ୍ଧ ହୋଇଗଲେ । ଆଟଲାଣ୍ଟାକୁ ନପାଇଲେ ତାର ଜୀବନ ରହିବ ନାହିଁ ବୋଲି ତାର ମନେହେଲା । ଏ ଯୁବକର ନାମ ମେଲାନିଅନ ।

ସେଦିନର ପ୍ରତିଯୋଗିତାରେ ଆଟଲାଣ୍ଟା ଜୟଲାଭ କଲେ ଓ ତାଙ୍କ ପ୍ରତିଯୋଗୀଙ୍କର ମସ୍ତକ ଛେଦନ କରାଗଲା । ଏହ ସ୍ୱଚକ୍ଷୁରେ ଦେଖି ସୁଦ୍ଧା ମେଲାନିଅନ ପ୍ରତିଯୋଗିତାରେ ଯୋଗଦେବାର ଇଚ୍ଛାପ୍ରକାଶ କଲେ । ଏହା ଶୁଣି ଦର୍ଶକମାନେ ଆଶ୍ଚର୍ଯ୍ୟ ହୋଇଗଲେ ।

ମେଲାନିଅନ ଆଟଲାଣ୍ଟାଙ୍କର ଦ୍ରୁତ ଦୌଡ଼ ଦେଖି ମନେକଲେ ଯେ ଦେବୀଙ୍କର ଅନୁଗ୍ରହ ବିନା ଏହି ପ୍ରତିଯୋଗିତାରେ ବିଜୟଲାଭ କରିବା ଅସମ୍ଭବ । ତେଣୁ ସେ ସୌନ୍ଦର୍ଯ୍ୟର ଦେବୀ ଆଫ୍ରୋଡାଇଟଙ୍କର ପୂଜା ଆରାଧନା କରି ତାଙ୍କୁ ସନ୍ତୁଷ୍ଟ କଲେ । ଦେବୀ ପ୍ରସନ୍ନ ହେବାରୁ ମେଲାନିଅନ ପ୍ରାର୍ଥନା କଲେ, ''ହେ ଦେବୀ, ମୁଁ ଜୀବନରେ ଆଟଲାଣ୍ଟାଙ୍କୁ ବିବାହ କରିବା ଛଡ଼ା ଆଉ କିଛି ଚାହେଁନାହିଁ । ମୁଁ ତାଙ୍କୁ କିପରି ପ୍ରତିଯୋଗିତାରେ ହରାଇପାରିବି, ତାହାର ଉପାୟ କହିଦିଅ ।''

ଦେବୀ ଆଫ୍ରୋଡାଇଟ ତିନୋଟି ସୁନାର ଆତ ମେଲାନିଅନଙ୍କୁ ଦେଇ କହିଲେ, ''ବତ୍ସ, ତୋର ଆରାଧନାରେ ମୁଁ ସନ୍ତୁଷ୍ଟ ହୋଇଅଛି । ଏ ତିନୋଟି ଫଳ ନେ । ଦୌଡ଼ ପ୍ରତିଯୋଗିତା ବେଳେ ଆଟଲାଣ୍ଟା ତୋତେ ବଳିଯିବାର ଦେଖାଗଲା ମାତ୍ରେ ତୁ ଏଥିରୁ ଗୋଟିଏ ଲେଖାଏଁ ଫଳ ତଳକୁ ପକାଇଦେବୁ । ଏହାର ସୌନ୍ଦର୍ଯ୍ୟରେ ଆକୃଷ୍ଟ ହୋଇ ଆଟଲାଣ୍ଟା ଏହାକୁ ଗୋଟାଇ ନେବାପାଇଁ କିଛି ସମୟ ରହିଯିବ । ସେହି ଅବସରରେ ତୁ ଦୌଡ଼ି ତାକୁ ବଳିଯିବୁ । ମୋର ଏହି ଉପଦେଶ ମାନି କାର୍ଯ୍ୟ କଲେ, ତୁ ନିଶ୍ଚୟ ଜୟଲାଭ କରିବୁ ।''

ମେଲାନିଅନ ଦେବୀଙ୍କୁ ପ୍ରଣାମ କରି ଫଳ ତିନୋଟି ଘେନିଆସିଲେ ।

ଯଥାସମୟରେ ପ୍ରତିଯୋଗିତା ଆରମ୍ଭ ହେଲା । ସେଦିନ ଦର୍ଶକ ସଂଖ୍ୟା ଅତ୍ୟଧିକ ହୋଇଥିଲା । ସେଥିର ବିଶେଷ କାରଣ ଥିଲା । ଏପର୍ଯ୍ୟନ୍ତ ଯେତେ ପ୍ରତିଯୋଗୀ ପ୍ରାଣ ଦେଇଥିଲେ ସେମାନଙ୍କଠାରୁ ମେଲାନିଅନ ରୂପରେ ଯେ ଶ୍ରେଷ୍ଠ ଥିଲେ, ଏଥିରେ ସନ୍ଦେହ ନଥିଲା । ସମସ୍ତଙ୍କର ବିଶ୍ୱାସ, ଏହି ଯୁବକହିଁ ଆଟଲାଣ୍ଟା ଭଳି ସୁନ୍ଦରୀର ଉପଯୁକ୍ତ ସ୍ୱାମୀ । ସେମାନେ ଭାବୁଥିଲେ, ''ଆଟଲାଣ୍ଟା ଆଜି ପ୍ରତିଯୋଗିତାରେ ହାରିଯାଉ । ତାହାହେଲେ ସେ ଉପଯୁକ୍ତ ପତି ଲାଭ କରିପାରିବ ଓ ଦୁହେଁ ସୁଖମୟ ଦାମ୍ପତ୍ୟ ଜୀବନ ଉପଭୋଗ କରିପାରିବେ ।''

ପ୍ରତିଯୋଗିତା ଆରମ୍ଭ ହେଲା । ଦୁହେଁ ପ୍ରାଣପଣେ ଦୌଡ଼ିବାକୁ ଲାଗିଲେ । ଦର୍ଶକମାନଙ୍କ ମଧ୍ୟରୁ କିଏ ଆଟଲାଣ୍ଟାଙ୍କର, କିଏ ଅବା ମେଲାନିଅନଙ୍କ ପ୍ରଶଂସା କରି ଉତ୍ସାହସୂଚକ ଧ୍ୱନିମାନ ଦେଲେ । କିଛି ସମୟ ପରେ ମେଲାନିଅନ ଲକ୍ଷ୍ୟକଲେ ଯେ ଆଟଲାଣ୍ଟା ତାଙ୍କୁ ଅତିକ୍ରମ କରିବା ଉପରେ । ସେ ତତ୍‌କ୍ଷଣାତ୍ ଗୋଟିଏ ସୁନାର ଆତ ଆଟଲାଣ୍ଟାଙ୍କ ଆଡ଼କୁ ଗଡ଼ାଇ ଦେଲେ । ଆଟଲାଣ୍ଟା ଏହି ଅପୂର୍ବସୁନ୍ଦର ଆତଟିକୁ

ଦେଖି ଲୋଭ ସମ୍ଭାଳିପାରିଲେନାହିଁ । ସେ ନଇଁପଡ଼ି ମୁହୂର୍ତ୍ତକ ମଧ୍ୟରେ ଆତଟିକୁ ନେଇଗଲେ ଓ ପୁଣି ଦୌଡ଼ିବାକୁ ଲାଗିଲେ । ଇତ୍ୟବସରେ ମେଲାନିଅନ କିଛି ଦୂର ଅଗ୍ରସର ହୋଇଯାଇଥିଲେ ।



ମାତ୍ର ଏହି ଦୂରତା ପୂରଣ କରିବାକୁ ଆଟଲାଣ୍ଟାଙ୍କୁ ବେଶୀ ସମୟ ଲାଗିଲାନାହିଁ । ଅଳ୍ପ ସମୟ ମଧ୍ୟରେ ସେ ପୁଣି ମେଲାନିଅନଙ୍କୁ ଅତିକ୍ରମ କରିବାକୁ ବସିଲେ । ଅବସ୍ଥାରେ ଗୁରୁତ୍ୱ ବୁଝି ମେଲାନିଅନ ଆଉ ଗୋଟିଏ ଆତ ଗଡ଼ାଇଦେଲେ । ଏଥର ମଧ୍ୟ ଆଟଲାଣ୍ଟା ଲୋଭକରି ତାହାକୁ ତଳୁ ଉଠାଇ ନେଲେ । କିନ୍ତୁ ଏହି ଅବସରରେ

ମେଲାନିଅନ କେତେକ ଦୂର ଆଗେଇ ଯାଇଥିଲେ । ଆଟଲାଣ୍ଟା ପୁଣି କ୍ଷିପ୍ରଗତିରେ ଦୌଡ଼ି ତାଙ୍କ ସହିତ ସମାନ ହୋଇଗଲେ ଓ ତାଙ୍କୁ ଅତିକ୍ରମ କରିଯିବାକୁ ଉଦ୍ୟମ କଲେ ।

ସେତେବେଳକୁ ଶେଷସୀମାର ସଙ୍କେତ ଦେଖାଗଲାଣି । ବିଜୟଲକ୍ଷ୍ମୀ କାହାକୁ ବରମାଲ୍ୟ ଦେବେ ସେ ବିଷୟରେ ଦର୍ଶକମାନଙ୍କ ମଧ୍ୟରେ ମତଭେଦ ଉପସ୍ଥିତ । ଏହି ସମୟରେ ମେଲାନିଅନ ତୃତୀୟ ଆତଟି ତଳେ ପକାଇଦେଇ ଦଉଡ଼ିବାକୁ ଲାଗିଲେ । ଆଟଲାଣ୍ଟା ଏହାକୁ ଉଠାଇନେବେ କି ନା ସ୍ଥିର କରିବା ପାଇଁ ମୁହୂର୍ତ୍ତେ ଚିନ୍ତା କଲେ । ତପୂରେ ସୀମାର ସଙ୍କେତକୁ ଚାହିଁ ମନେକଲେ ଯେ ସେ ଟିକିଏ ବିଳମ୍ବ କଲେ ମଧ୍ୟ ଜୟଲାଭ କରିପାରିବେ । ତେଣୁ ସେ ଏହି ଆତଟିକୁ ମଧ୍ୟ ଉଠାଇନେଲେ । ଏବେ ପ୍ରତିଯୋଗିତାର ଶେଷ ସମୟ । ଦୁହେଁଯାକ ଦୌଡ଼ିଲା ବେଳେ କାହାରି ପାଦ ଭୂମିରେ ଲାଗୁଥିଲା ପରି ମନେହେଲାନାହିଁ ।

ପରିଶେଷରେ ମେଲାନିଅନ ଆଗେଇଯାଇ ସୀମାସଙ୍କେତ ସ୍ପର୍ଶ କଲେ । ସେତେବେଳକୁ ଆଟଲାଣ୍ଟା ମାତ୍ର କେତେ ଆଙ୍ଗୁଳ ପଛରେ ଥିଲେ ।

ଦର୍ଶକମାନେ ଆନନ୍ଦ ଉଲ୍ଲାସରେ କୋଳାହଳ କଲେ । ମେଲାନିଅନ ପ୍ରତିଯୋଗିତାରେ ଜିଣି ଯେତିକି ଆନନ୍ଦ ଲାଭ କରିଥିଲେ ଜୀବନରେ ପ୍ରଥମଥରପାଇଁ ଦୌଡ଼ରେ ହାରିଯାଇ ମଧ୍ୟ ଆଟଲାଣ୍ଟାଙ୍କ ଆନନ୍ଦ ତହିଁରୁ ଊଣାନଥିଲା । ମହା-ଆଡ଼ମ୍ବରରେ ମେଲାନିଅନ ଓ ଆଟଲାଣ୍ଟାଙ୍କର ବିବାହ ଉତ୍ସବ ସମ୍ପନ୍ନ ହେଲା । ଏହି ବିବାହରେ ଜନସାଧାରଣ ମଧ୍ୟ ଆନନ୍ଦିତ ହେଲେ ।

—

# ପିରାମସ୍ ଓ ଥିସ୍‌ବେ

ବେବିଲୋନ ସହରରେ ଦୁଇଟି ପରିବାର ବାସ କରୁଥିଲେ । ଦୁହିଁଙ୍କ ଘର ଲାଗାଲଗି । ମଝିରେ ଗୋଟିଏ କାନ୍ଥ ଦୁଇ ପରିବାରର ଘରକୁ ପୃଥକ୍ କରୁଥିଲା । ଏହି ଦୁଇ ପରିବାର ମଧ୍ୟରେ ଅନେକ ଦିନରୁ କଳି ଲାଗିଥିଲା । ଗୋଟିଏ ପରିବାରର ଲୋକେ ଅନ୍ୟ ପରିବାରର ଲୋକଙ୍କ ସହିତ କଥାବାର୍ତ୍ତା ସୁଦ୍ଧା କରୁନଥିଲେ ।

ଗୋଟିଏ ପରିବାରରେ ପିରାମସ୍ ବୋଲି ଗୋଟିଏ ପୁଅ ଓ ଅନ୍ୟ ପରିବାରରେ ଥିସ୍‌ବେ ବୋଲି ଗୋଟିଏ ଝିଅ ଥିଲା । ଦୁଇ କୁଟୁମ୍ବ ଭିତରେ କଳିଗୋଳ ଥିବାରୁ କେହି କାହା ଘରକୁ ଯାଉନଥିଲେ । ଦୁହିଁଙ୍କର ଇଚ୍ଛା ସାଙ୍ଗସାଥୀ ହୋଇ ଖେଳନ୍ତେ, ବୁଲନ୍ତେ—କିନ୍ତୁ ତା ହୋଇପାରେନାହିଁ ।

ପିଲା ଦିଓଟି କ୍ରମେ ବଢ଼ିଲେ । ଦୁହିଁଙ୍କର ଯୌବନ କାଳ ଉପସ୍ଥିତ ହେଲା । ଅନ୍ୟଲୋକଙ୍କଠାରୁ ପିରାମସ୍ ଶୁଣିବାକୁ ପାଏ, ଥିସ୍‌ବେ ଗୋଟିଏ ଅପୂର୍ବ ସୁନ୍ଦରୀ ଝିଅ; ତାର ଆଚରଣ ମଧ୍ୟ ଅତି ଭଲ । ସେହିପରି ଥିସ୍‌ବେ ମଧ୍ୟ ବାହାର ଲୋକଙ୍କଠାରୁ ଶୁଣେ, ପିରାମସ୍ ଭଳି ରୂପବାନ୍ ଓ ସାହସୀ ଯୁବକ ଆଖପାଖରେ ନାହାନ୍ତି । ଦୁହେଁ ପରସ୍ପରକୁ ଦେଖିବାପାଇଁ ଅସ୍ଥିର ହୋଇପଡ଼ିଲେ, କିନ୍ତୁ ଦୁଇଘର ମଧ୍ୟରେ ପ୍ରାଚୀର ବ୍ୟବଧାନ । କେହି କାହାକୁ ନଦେଖିଲେ ସୁଦ୍ଧା ସେ ଦୁହେଁ ପରସ୍ପରକୁ ଭଲପାଇ ବସିଲେ । କିନ୍ତୁ ଦେଖାହେବାର ସୁବିଧା ନଥିବାରୁ ଜଣେ ଅପରକୁ କେବଳ ଝୁରିହେଲା ।

ଦିନେ ପିରାମସ୍ ଦେଖିଲା ଯେ ଦୁଇ ପରିବାରର ଘରକୁ ଅଲଗା କରୁଥିବା କାନ୍ଥରେ ଗୋଟିଏ ଅତି କ୍ଷୁଦ୍ର କଣା ଅଛି । ଏହା ସାହାଯ୍ୟରେ କେହି କାହାରି ମୁଖ ଦେଖିବାର ସମ୍ଭାବନା ନଥିଲା, କିନ୍ତୁ ଏହି ବାଟରେ ଦୁହେଁ କଥାବାର୍ତ୍ତା ହୋଇପାରିଲେ । ଦୁହେଁ ମନଖୋଲି ସବୁକଥା କହିଲେ । ଶେଷରେ ସ୍ଥିର ହେଲା ଯେ ସେ ଦୁହେଁ ଘରଛାଡ଼ି ପଳାଇଯିବେ । ବାପମାଆ କେବେହେଲେ ସେ ଦୁହିଁଙ୍କର ବିବାହ କରାଇଦେବେନାହିଁ । ଘରୁ ପଳାଇ ଗଲେ ବାପମାଆ ବାଧା ଦେଇପାରିବେନାହିଁ । ସହରର ଶେଷଭାଗରେ ଗୋଟିଏ ବରଗଛ ଥିଲା । ସ୍ଥିର ହେଲା ଯେ ସେମାନେ ସେହି ରାତ୍ରିର ଅଧରେ ଘରୁ ବାହାରି ଗଛମୂଳକୁ ଯିବେ । ଯିଏ ଆଗ ଯାଇ ପହଞ୍ଚିବ ସେ ଅନ୍ୟକୁ ଅପେକ୍ଷା କରି ରହିବ ।

ଦୁଇ କୁଟୁମ୍ବର ଲୋକେ ଶୋଇପଡ଼ିଲେ । କିନ୍ତୁ ପିରାମସ୍ ଓ ଥିସ୍‌ବେଙ୍କର ଆଖିରେ ନିଦନାହିଁ । ସୁବିଧା ଦେଖି ସେ ଦୁହେଁ ନିଜ ନିଜ ଘରୁ ବାହାରିପଡ଼ିଲେ ।

କାଳେ କିଛି ବିପଦ ଘଟିବ ସେଥିପାଇଁ ପ୍ରତ୍ୟେକେ ଗୋଟିଏ ଲେଖାଏଁ ଛୁରା ନେଇଥିଲେ ।

ଥିସ୍‌ବେ ଆଗ ଯାଇ ବରଗଛ ମୂଳେ ପହଞ୍ଚିଲା । ସେ ପିରାମସ୍‌କୁ ଅପେକ୍ଷା କରି ରହିଲା । ଏହି ସମୟରେ ସେ ଦେଖିବାକୁ ପାଇଲା, ଗୋଟିଏ ସିଂହ ଛେଳିଟିଏ ମାରି ସେହି ଗଛପାଖରେ ଖାଉଛି । ତାର ଭୟ ହୋଇଗଲା । ଜୀବନରକ୍ଷା କରିବାପାଇଁ ସେ ଦଉଡ଼ି ପଳାଇଲା । ଗଲାବେଳେ ତାର ଓଢ଼ଣିଟା ତଳେ ପଡ଼ିଗଲା । କିନ୍ତୁ ସେତେବେଳେ ସେ ଓଢ଼ଣି କଥା ଭାବିପାରିଲାନାହିଁ । କିଛି ଦୂରରେ ଗୋଟିଏ ଗୁହା ଥିଲା, ସେ ତାରି ଭିତରେ ଲୁଚି ବସିଲା ।

ସିଂହ ଛେଳିକୁ ଖାଇସାରି ଯିବାବେଳକୁ ସେହି ଓଢ଼ଣିକୁ ଦେଖିଲା । ସେ ତାକୁ ଦାନ୍ତରେ ଚିରି ଟିକି ଟିକି କରି ପକାଇଲା । ତା ମୁହଁରେ ଲାଗିଥିବା ଛେଳିରକ୍ତ ସେ ଚିରା ଓଢ଼ଣିରେ ବୋଳିହୋଇଗଲା । ସିଂହ ତାହା ପରେ ଜଙ୍ଗଲକୁ ଚାଲିଗଲା ।

କିଛି ସମୟ ପରେ ପିରାମସ୍ ଆସି ସେହି ବରଗଛ ମୂଳେ ପହଞ୍ଚିଲା । ଥିସ୍‌ବେକୁ ଗଛପାଖରେ ନଦେଖି ସେ 'ଥିସ୍‌ବେ', 'ଥିସ୍‌ବେ' ବୋଲି ବଡ଼ପାଟିରେ ଡାକିଲା; କିନ୍ତୁ କୌଣସି ଉତ୍ତର ମିଳିଲାନାହିଁ । ପ୍ରଥମେ ସେ ଭାବିଲା, 'ଠିକ୍ ସମୟରେ ନ ଆସିଥିବାରୁ ଥିସ୍‌ବେ ତା ଉପରେ ବିରକ୍ତ ହୋଇ କୌଣସିଠାରେ ଲୁଚିରହିଛି, ଅଭିମାନରେ ଉତ୍ତର ଦେଉନାହିଁ ।''

ହଠାତ୍ ତାର ନଜର ପଡ଼ିଲା ଚିରା ଓଢ଼ଣିଉପରେ । ଓଢ଼ଣିଟି ରକ୍ତରେ ଜୁଡୁବୁଡୁ ହୋଇଥିବାର ଦେଖି ସେ ଭାବିଲା, 'ହାୟ, ଥିସ୍‌ବେ ଆଉ ଜୀବନରେ ନାହିଁ । ସେ ନିଶ୍ଚୟ ବ୍ୟାଘ୍ର କିମ୍ବା ସିଂହଦ୍ୱାରା ନିହତ ହୋଇଅଛି । ତାହା ନୋହିଥିଲେ ତାର ରକ୍ତାକ୍ତ ଓଢ଼ଣି ପଡ଼ିଥାନ୍ତା କାହିଁକି ? ତାର ମୃତ୍ୟୁପାଇଁ ମୁଁ ଦାୟୀ । ମୁଁ ଠିକ୍ ସମୟରେ ଆସିଥିଲେ ଏ ଦୁର୍ଘଟଣା ଘଟିନଥାନ୍ତା । ମୁଁ ପାଖରେ ଥିଲେ ତାକୁ ହିଂସ୍ରଜନ୍ତୁ ମୁହଁରୁ ରକ୍ଷାକରିପାରିଥାନ୍ତି । ଥିସ୍‌ବେ ବିନା ମୋର ଏ ଜୀବନରେ କି ପ୍ରୟୋଜନ ?''

ଏହିପରି ଚିନ୍ତାକରି ପିରାମସ୍ ଘୋର ମନଦୁଃଖରେ ଛୁରାଟିକୁ ନିଜ ଛାତିରେ ଭୁଷିଦେଇ ପ୍ରାଣତ୍ୟାଗ କଲା ।

ଥିସ୍‌ବେ ତ ଗୁହା ଭିତରେ ଲୁଚି ରହିଥିଲା— ସିଂହ ଚାଲିଯିବାର କିଛି ସମୟ ପରେ ସେ ଗୁହାରୁ ବାହାରି ବରଗଛ ମୂଳକୁ ଆସିଲା । ସେଠାରେ ସେ ଯାହା ଦେଖିଲା, ସେଥିରେ ସେ ସ୍ତମ୍ଭୀଭୂତ ହୋଇଗଲା । ପିରାମସ୍‌ର ପିଣ୍ଡରେ ପ୍ରାଣ ନଥିଲା । ଛୁରାଟି ତାହା ପାଖରେ ପଡ଼ିଥିଲା ଓ ଛାତିରୁ ରକ୍ତ ବହି ଭୂମିକୁ ରକ୍ତାକ୍ତ କରିଦେଇଥିଲା । ମୁହୂର୍ତ୍ତକ ମଧ୍ୟରେ ସେ ପ୍ରକୃତ ଘଟନା ଅନୁମାନ କରିପାରିଲା— ତାର ରକ୍ତାକ୍ତ ଓଢ଼ଣିକୁ ଦେଖି ସେ ବ୍ୟାଘ୍ର ବା ସିଂହଦ୍ୱାରା ନିହତ ବୋଲି ମନେକରି ପିରାମସ୍ ଆତ୍ମହତ୍ୟା

କରିଅଛି । ସେ ବିଳାପ କରିବାକୁ ଲାଗିଲା–''ମୁଁ ହତଭାଗିନୀ, ମୋରି ଯୋଗୁଁ ମୋର ପ୍ରିୟ ପିରାମସ୍ ପ୍ରାଣତ୍ୟାଗ କଲେ । ମୁଁ ଯଦି ଓଢ଼ଣିଟିକୁ ପକାଇଦେଇ ନଥାନ୍ତି, ତେବେ ମୁଁ ନିହତ ବୋଲି ସେ ମନେକରି ନଥାନ୍ତେ । ଏବେ ମୁଁ ବଞ୍ଚି ରହିବାରେ କି ଲାଭ ?



ମୋ ସକାଶେ ମୋର ପ୍ରିୟତମ ପିରାମସ୍ ଜୀବନ ଦେଲେ । ଇହ ଜୀବନରେ ଆଉ ତାଙ୍କୁ ପାଇପାରିବିନାହିଁ । ତେଣୁ ମୁଁ ମଧ ଆତ୍ମହତ୍ୟା କରିବି । ତାହାହେଲେ ପରଲୋକରେ ତାଙ୍କ ସଙ୍ଗେ ମୋର ମିଳନ ହେବ ।''

ଏହିପରି ବିଳାପ କରି ସେ ଛୁରାଟି ନେଇ ନିଜ ଛାତିରେ ଭୁଷିଦେଲା । ପିରାମସ୍‌ଙ୍କ ଶବ ନିକଟରେ ତାର ମୃତଦେହ ଢଳିପଡ଼ିଲା ।

ଏଥିପୂର୍ବରୁ ବରଗଛର ଫଳ ସବୁଜ ଥିଲା । କିନ୍ତୁ ଏ ଦୁଇ ପ୍ରଣୟୀ ରକ୍ତର ସ୍ମୃତିରେ ବରଫଳ ପାଚିଗଲେ, ଲାଲବର୍ଣ୍ଣ ଧାରଣ କଲା । ଏବେ ମଧ୍ୟ ପାଚିଲା ବରଫଳର ରଙ୍ଗ ଲାଲ ହେଉଅଛି ।

—

# ଫିଲେମନ ଓ ବସିସ୍

ସ୍ୱର୍ଗର ଦେବତାମାନଙ୍କର ରାଜା ଜିଅସ ପୃଥିବୀର ଲୋକମାନଙ୍କ ଅବସ୍ଥା ଜାଣିବା ପାଇଁ ବେଳେ ବେଳେ ମନୁଷ୍ୟ ରୂପ ଧରି ପୃଥିବୀକୁ ଆସୁଥିଲେ । ଥରେ ଜିଅସ୍ ହର୍ମିସ ନାମକ ଜଣେ ଦେବତାଙ୍କୁ ସଙ୍ଗରେ ଘେନି ପୃଥିବୀକୁ ଆସିଲେ । ଦୁହେଁଯାକ ମନୁଷ୍ୟ ରୂପରେ ପ୍ରିଜିଆ ରାଜ୍ୟ ବୁଲି ଦେଖିଲେ । ସନ୍ଧ୍ୟାବେଳକୁ ସେମାନେ ଗୋଟିଏ ଗ୍ରାମରେ ପହଞ୍ଚିଲେ । ଚାଲି ଚାଲି ସେମାନେ କ୍ଳାନ୍ତ ହୋଇପଡ଼ିଥିଲେ ଓ ସେମାନଙ୍କୁ କ୍ଷୁଧା ହେଉଥିଲା । ରାତିରେ କିଛି ଆହାର ଓ ଶୋଇବାପାଇଁ ଟିକିଏ ଆଶ୍ରୟ ଆଶାରେ ସେମାନେ ଗ୍ରାମର ଅନେକ ଲୋକଙ୍କ ଦ୍ୱାରରେ ଆଘାତ କଲେ । କିନ୍ତୁ କେହି ଦ୍ୱାର ଫିଟାଇଲେ-ନାହିଁ । ଘୋର ଅନ୍ଧକାର ରାତ୍ରି; ସେଥିରେ ପୁଣି ବର୍ଷା ହେଉଥାଏ, ଥଣ୍ଡା ପବନ ବହୁଥାଏ । ସେ ଦୁହେଁ ପ୍ରତ୍ୟେକ ଦ୍ୱାରରୁ ନିରାଶ ହୋଇ ଗ୍ରାମର ଶେଷରେ ଥିବା ଘର ପାଖରେ ପହଞ୍ଚିଲେ । ଘରଟି ଖୁବ୍ ଛୋଟ । ଘରର ଅବସ୍ଥାରୁ ଜଣାପଡୁଥିଲା ଯେ ଏହା ଗୋଟିଏ ଅତି ଦରିଦ୍ର ଲୋକର ଘର । ଯାହାହେଉ, ଜିଅସ ଓ ହର୍ମିସ ସେହି ଘରର ଦ୍ୱାରରେ ଆଘାତ କଲେ ।

ଏହି ଘରଟି ଫିଲେମନ ବୋଲି ଜଣେ ବୃଦ୍ଧର । ସେ ତାହାର ସ୍ତ୍ରୀ ବସିସ୍ ସହିତ ଏହି ଘରେ ବାସକରୁଥିଲା । ତାର କୌଣସି ପୁତ୍ରକନ୍ୟା ନଥିଲେ । କବାଟରେ କେହି ଆଘାତ କରୁଥିବାର ଜାଣି ଫିଲେମନ ତତ୍କ୍ଷଣାତ୍ କବାଟ ଫିଟାଇଦେଲା । ମନୁଷ୍ୟ ରୂପଧାରୀ ଏହି ଦୁଇ ଦେବତାଙ୍କୁ ଦେଖି ସେ ଭାବିଲା, ଏ ଦୁଇଜଣ ବାଟୋଇ ହେବେ— ରାତିରେ ବିଶ୍ରାମ ନେବାପାଇଁ ତା ଘରକୁ ଆସିଅଛନ୍ତି । ସେ ଆନନ୍ଦରେ ସେ ଦୁହିଁଙ୍କୁ ଘର ଭିତରକୁ ଡାକିନେଲା ଓ ଦୁହିଁଙ୍କୁ ବସିବାପାଇଁ ଆସନ ଦେଲା । ଜିଅସ ଓ ହର୍ମିସ ଆସନରେ ବସିବାରୁ ବସିସ୍ ମୁହଁ ହାତ ଧୋଇବାପାଇଁ ସେମାନଙ୍କୁ ପାଣି ଦେଲା । ତତ୍ପରେ ସେ ଚୁଲିରେ ଜାଳ ଦେଇ ରାତିରେ ଖାଇବା ନିମନ୍ତେ ଖାଦ୍ୟ ପ୍ରସ୍ତୁତ କଲା । ଖାଦ୍ୟ ପ୍ରସ୍ତୁତହେବା ପରେ ଫିଲେମନ, ବସିସ୍ ଓ ଅତିଥି ଦୁହେଁ ସମସ୍ତେ ଖାଇବାକୁ ବସିଲେ । ଖାଦ୍ୟରେ କିଛି ଆଡ଼ମ୍ବର ନଥିଲା । ଅତି ସାଧାରଣ ଆହାର । ଭୋଜନ ଶେଷ ହେବାବେଳକୁ ଫିଲେମନ ତାର ବହୁଦିନରୁ ସଞ୍ଚିତ ମଦବୋତଲଟି ଆଣି ଅତିଥି ଦୁହିଁଙ୍କ ଗ୍ଲାସ୍‌ରେ ଢାଳିଦେଲା ।

ଭୋଜନ ଶେଷ ହେଲା । ବସିସ୍ ଖାଲିବୋତଲଟି ରଖିଦେବାପାଇଁ ଟେବୁଲରୁ ଉଠାଇନେଲା । କିନ୍ତୁ ସେ ଦେଖିଲା ଯେ ବୋତଲଟି ମଦରେ ପୂର୍ଣ୍ଣ । ତାକୁ ବଡ଼ ଆଶ୍ଚର୍ଯ୍ୟ

ଲାଗିଲା । ସେ ସ୍ୱାମୀଙ୍କୁ ଡାକି ଏହି ବିଚିତ୍ର କଥା ଜଣାଇଲା । ସେ ଦୁହେଁ ମନେ ମନେ ସ୍ଥିର କଲେ ଯେ ଏମାନେ ସାଧାରଣ ମନୁଷ୍ୟ ନୁହନ୍ତି । ନିଶ୍ଚୟ କୌଣସି ଦେବତା ମନୁଷ୍ୟରୂପ ଧରି ତାଙ୍କ ଘରକୁ ଆସିଅଛନ୍ତି ।

ଅତିଥି ଖାଇସାରି ବିଶ୍ରାମ ନେବା ପରେ ଫିଲେମନ ଓ ବସିସ୍‌ଙ୍କୁ କହିଲେ, ମୁଁ ହେଉଛି ଦେବରାଜ ଜିଅସ ଓ ମୋର ସାଥୀ ହେଉଛନ୍ତି ହର୍ମିସ । ପୃଥିବୀର ଲୋକେ କିପରି ଚଳୁଛନ୍ତି ଦେଖିବାପାଇଁ ଆମେ ମଣିଷ ରୂପ ଧରି ଆସିଥିଲୁ । ଏ ଗ୍ରାମର କେହି ଜଣେ ହେଲେ ଆମକୁ ଦୟା ଦେଖାଇ ଖାଦ୍ୟ ବା ଆଶ୍ରୟ ଦେଲେନାହିଁ । ତୁମର ଆଚରଣରେ ଆମେ ଅତ୍ୟନ୍ତ ସନ୍ତୁଷ୍ଟ ହୋଇଅଛୁ । ତେଣୁ ତୁମକୁ ଗୋଟିଏ ବରଦେବାକୁ ଆମର ଇଚ୍ଛା । କିନ୍ତୁ ତା ପୂର୍ବରୁ ଏ ଗ୍ରାମର ନିଷ୍ଠୁର ଲୋକମାନଙ୍କୁ ଦଣ୍ଡ ଦିଆଯିବ ।'' ଏହା କହି ଜିଅସ ସମୁଦ୍ରର ଦେବତା ପସିଡନଙ୍କୁ ଆଦେଶ ଦେଲେ, ''ତୁମର ଲହରୀରେ ଏ ଅଞ୍ଚଳକୁ ବୁଡ଼ାଇ ଦେଇ ଏ ଗ୍ରାମର ଲୋକମାନଙ୍କୁ ଧ୍ୱଂସ କରିଦିଅ । କେବଳ ଫିଲେମନ ଓ ବସିସ୍‌ଙ୍କର କିଛି କ୍ଷତି କରିବନାହିଁ ।''

ଜିଅସଙ୍କ ଆଦେଶ ପାଇ ସମୁଦ୍ର ମାଡ଼ିଆସି ଗ୍ରାମଟିକୁ ବୁଡ଼ାଇଦେଲା ; କେବଳ ଫିଲେମନଙ୍କ ଘରଟି ଗୋଟିଏ ମନ୍ଦିରରେ ପରିଣତ ହୋଇ ଅକ୍ଷତ ଅବସ୍ଥାରେ ରହିଲା । ଫିଲେମନ ଓ ବସିସ୍‌ଙ୍କର କିଛି ମାତ୍ର କ୍ଷତି ହେଲାନାହିଁ । ଅନ୍ୟ ସମସ୍ତେ ଜଳମଗ୍ନ ହୋଇ ମଲେ । ଜିଅସ ଫିଲେମନଙ୍କୁ କହିଲେ, ''ତୁମେ ଓ ତୁମର ସ୍ତ୍ରୀ ଏ ମନ୍ଦିରରେ ପୂଜା ଆରାଧନା କରି ସୁଖରେ ରହିବ । ଏବେ ତୁମେ ଆଉ କଅଣ ଚାହଁ, କୁହ । ମୁଁ ତୁମର ଇଚ୍ଛା ପୂରଣ କରିବି ।''

ଫିଲେମନ ଓ ବସିସ୍ ହାତଯୋଡ଼ି ଜଣାଇଲେ, ''ପ୍ରଭୁ, ଆପଣଙ୍କର ଆମ ପ୍ରତି ଖୁବ୍ ଦୟା । ଆମେ ଦୁହେଁ ଏତେଦିନ ହେଲା ଏକତ୍ର ରହିଆସିଛୁ । ଆମକୁ ଏହି ବର ଦିଅନ୍ତୁ ଯେ ଏକସମୟରେ ଆମ ଦୁହିଁଙ୍କର ମୃତ୍ୟୁ ହେଉ; ମୃତ୍ୟୁପର୍ଯ୍ୟନ୍ତ ଆମେ ଏକ ସଙ୍ଗରେ ରହିଥାଉ ।''

ଜିଅସ 'ତଥାସ୍ତୁ' କହି ହର୍ମିସଙ୍କ ସହିତ ସ୍ୱର୍ଗକୁ ଫେରିଗଲେ । ଫିଲେମନ ଓ ବସିସ୍ ଅନେକଦିନ ପର୍ଯ୍ୟନ୍ତ ଏକତ୍ର ମନ୍ଦିରରେ ରହି ପୂଜା ଆରାଧନାରେ ସମୟ କଟାଇଲେ । ଦିନେ ହଠାତ୍ ସେମାନେ ମନ୍ଦିର ଦ୍ୱାରରେ ଦୁଇଟି ବୃକ୍ଷରେ ପରିଣତ ହୋଇଗଲେ । ଏହିପରି ସେମାନେ ଏକ ସମୟରେ ମୃତ୍ୟୁ ଲାଭ କଲେ ।

—

# ଥିସିଅସ୍ ଓ ମିନୋଟର

ଏଥେନ୍‌ସରେ ଏଜିଅସ ବୋଲି ଜଣେ ପ୍ରସିଦ୍ଧ ରାଜା ଥିଲେ । ତାଙ୍କ ପରି ବଳବାନ୍ ଓ ସାହସୀ ବୀର ଅତି ଅଳ୍ପ ଥିଲେ । ତାଙ୍କ ପୁତ୍ରର ନାମ ଥିସିଅସ୍ । ସମୁଦ୍ରର ଯେଉଁ କୂଳରେ ଏଥେନ୍‌ସ ଅବସ୍ଥିତ ଥିଲା ତାର ଠିକ୍ ବିପରୀତ ପାଖରେ ଥିଲା କ୍ରୀଟ୍ ରାଜ୍ୟ । ଏ ରାଜ୍ୟରେ ଗୋଟିଏ ଭୀଷଣ ରାକ୍ଷସ ଥିଲା । ତାହାର ଶରୀରର ଅଧେ ଥିଲା ମନୁଷ୍ୟର ଶରୀରପରି ଓ ଅପର ଅଧକ ଗୋଟିଏ ବୃଷଭର ଶରୀରପରି । ତାହାର ନାମ ମିନୋଟର । କ୍ରୀଟ୍‌ର ରାଜା ଟାଇନ୍‌ସ ଏହାକୁ ବନ୍ଦୀ କରି ରଖିବାପାଇଁ ଗୋଟିଏ ବିଚିତ୍ର ବନ୍ଦିଶାଳା ତିଆରି କରାଇଥିଲେ । ଏହା ପଥରରେ ନିର୍ମିତ ହୋଇଥିଲା ଓ ଏଥିରେ ଅନେକଗୁଡ଼ିଏ ପ୍ରବେଶ ପଥ ଥିଲା । ଏହି ପଥଗୁଡ଼ିକ ଏପରି ନିର୍ମିତ ହୋଇଥିଲା ଯେ ଥରେ ଏହି ବନ୍ଦିଶାଳାରେ ପ୍ରବେଶ କଲେ ଏଥିରୁ ବାହାରିବାର ଉପାୟ ନଥିଲା । ରାଜା ମାଇନସ ମିନୋଟରକୁ ଏହି ବନ୍ଦିଶାଳାରେ ରଖିଥିଲେ; କିନ୍ତୁ ତାହାକୁ ବଧ କରିପାରି ନଥିଲେ । ତାକୁ କେବଳ ବନ୍ଦୀ କରି ରଖିବା ତାଙ୍କର ଇଚ୍ଛା ଥିଲା ।

ମିନୋଟର ବର୍ଷକେ ଦିନେ ମାତ୍ର ଆହାର କରୁଥିଲା । କିନ୍ତୁ ସେହି ଦିନକରେ ସେ ସାତଟି ଯୁବକ ଓ ସାତଟି ଯୁବତୀର ମାଂସ ଭୋଜନ କରୁଥିଲା । ରାଜା ମାଇନସଙ୍କ ଆଦେଶରେ ନିର୍ଦ୍ଦିଷ୍ଟ ଦିନ ସାତଜଣ ଯୁବକ ଓ ସାତଜଣ ଯୁବତୀଙ୍କୁ ମିନୋଟରର ବନ୍ଦିଶାଳାକୁ ପଠାଯାଉଥିଲା ଓ ମିନୋଟର ସେମାନଙ୍କୁ ଖାଉଥିଲା ।

ବର୍ଷେ କ୍ରୀଟ୍‌ର ରାଜା ମାଇନସ ଏଥେନ୍‌ସର ରାଜା ଏଜିଅସଙ୍କୁ ଅନୁରୋଧ କଲେ– ମିନୋଟରର ଭୋଜନପାଇଁ ସାତଜଣ ଯୁବକ ଓ ସାତଜଣ ଯୁବତୀ ପଠାଇବାକୁ ହେବ । ଏହି ସମ୍ବାଦରେ ଏଥେନ୍‌ସରେ ଦୁଃଖର ଛାୟା ଖେଳିଗଲା । କିନ୍ତୁ ଏଜିଅସଙ୍କ ପୁତ୍ର ଥିସିଅସ୍ ଏହି ସମ୍ବାଦରେ ଭୀତ ନହୋଇ ପିତାଙ୍କୁ କହିଲେ, ''ପିତା, ଆମ ରାଜ୍ୟର ଛଅଜଣ ଯୁବକ ଓ ସାତଜଣ ଯୁବତୀଙ୍କୁ ମୋ ସଙ୍ଗେ ଦିଅନ୍ତୁ । ମୁଁ ଯାଇ ସେହି ରାକ୍ଷସ ମିନୋଟରକୁ ବଧ କରି ଆସିବି ।''

ରାଜା ଏଜିଅସ ପୁତ୍ରକୁ ଏପରି ବିପଜ୍ଜନକ କାର୍ଯ୍ୟରୁ ବାରଣ କରି କହିଲେ, ''ପୁଅ, ତୁ ମିନୋଟର ଭଳି ରାକ୍ଷସ ସହିତ କିପରି ଯୁଦ୍ଧ କରି ତାକୁ ମାରିବୁ ? ତୁ ଏ ଦୁଃସାହସ କରନା । ମୁଁ ମିନୋଟରପାଇଁ ଲୋକ ଠିକ୍ କରି ରଖିଛି– ସେମାନଙ୍କୁ ଖାଇ ସେ ସନ୍ତୁଷ୍ଟ ହେବ । ଆଉ ଗୋଟିଏ କଥା, ତାକୁ ମାରିବା ଏବେ ସହଜ ହୋଇଥିଲେ

ରାଜା ମାଇନସ କାହିଁକି ତାକୁ ଆଜିଯାଏ ରଖିଥାଆନ୍ତେ ଓ ରାଜ୍ୟର ଏତେ ଯୁବକ-ଯୁବତୀଙ୍କୁ ମରଣ ମୁହଁରେ ଛାଡ଼ିଦେଉଥାନ୍ତେ ? ତୁ ଏ ଦୁଃସାହସ କରନାହିଁ ।''

କିନ୍ତୁ ଥିସିଅସ୍ ଜିଦ୍ କରି କହିଲେ, ''ନା ବାପା, ତୁମେ ଭୟ କରନାହିଁ । ମୁଁ ନିଶ୍ଚୟ ମିନୋଟରକୁ ମାରି ଫେରିଆସିବି ।'' ପୁଅର ଏଭଳି ଜିଦ୍ ଦେଖି ଏଜିଅସ ବାଧ ହୋଇ ତାଙ୍କୁ କ୍ରୀଟ୍‌କୁ ଯିବାପାଇଁ ଅନୁମତି ଦେଲେ ।

ଗୋଟିଏ ଜାହାଜରେ ଥିସିଅସ୍ ଓ ଅନ୍ୟ ଯୁବକ-ଯୁବତୀମାନେ ବସିଲେ । ଜାହାଜର ପାଲଗୁଡ଼ିକ ଶୋକସୂଚକ କଳା କନାରେ ନିର୍ମିତ ହୋଇଥିଲା । ଥିସିଅସ୍ ଯିବା ପୂର୍ବରୁ ପିତାଙ୍କର ଆଶୀର୍ବାଦ ମାଗିଲେ । ବୃଦ୍ଧ ଏଜିଅସ କହିଲେ, ''ତୁ ମିନୋଟରକୁ ବଧ କରି ନିରାପଦରେ ଫେରିଆ, ଏଇ ହେଉଛି ମୋର ଆଶୀର୍ବାଦ । ତୁ ନ ଫେରିବାପର୍ଯ୍ୟନ୍ତ ମୁଁ କିପରି ଚିନ୍ତା ଓ ଅଶାନ୍ତିରେ ରହିଥିବି ତାହା ଅନୁମାନ କରିପାରୁଥିବୁ । ତୋର ଶୁଭ ସମ୍ବାଦ ପାଇଁ ମୁଁ ଚାହିଁ ରହିଥିବି । ତୁ ମିନୋଟରକୁ ହତ୍ୟା କରି ଫେରିଆସିଲେ ଜାହାଜରେ ଧଳା ରଙ୍ଗର ପାଲ ଉଡ଼ାଇ ଆସିବୁ । ତାହେଲେ ଦୂରରୁ ସମୁଦ୍ର ଉପରେ ତୋର ଜାହାଜକୁ ଦେଖି ମୁଁ ବୁଝିବି ଯେ ମୋ ପୁଅ ମିନୋଟରକୁ ମାରି ଆସିଛି । ଯଦି ଏହି ପୁରୁଣା କଳା ରଙ୍ଗର ପାଲ ଦେଖେଁ ତେବେ ଜଣାଯିବ ଯେ ତୁ ମିନୋଟରର ଆହାର ହୋଇଛୁ ଓ ଜାହାଜ ଫେରିଆସିଛି ।''

ଥିସିଅସ୍ ଏହି ପ୍ରସ୍ତାବରେ ସମ୍ମତ ହୋଇ କହିଲେ, ''ମୁଁ ଫେରିଆସିଲା-ବେଳେ ଜାହାଜରେ ଧଳା ପାଲ ଉଡ଼ାଇ ଆସିବି । ଦୂରରୁ ଆମ ଜାହାଜକୁ ଦେଖି ମୋର ବିଜୟ ସମ୍ବାଦ ତୁମେ ପାଇପାରିବ ।''

ଏଥେନ୍‌ସରୁ ଥିସିଅସ୍, ଛଅଜଣ ଯୁବକ ଓ ସାତଜଣ ଯୁବତୀ ଗୋଟିଏ ଜାହାଜରେ ବସି କ୍ରୀଟ୍ ଅଭିମୁଖରେ ବାହାରିଲେ । କ୍ରୀଟ୍‌ରେ ପହଞ୍ଚିବା ମାତ୍ରେ ରାଜା ମାଇନସଙ୍କ ଆଦେଶରେ ସେମାନଙ୍କୁ ତାଙ୍କ ପାଖକୁ ନିଆଗଲା । ରାଜା ମାଇନସ ସେମାନଙ୍କୁ ଗଣିଲେ ଓ ଦେଖି ସ୍ଥିର କଲେ ଯେ ସେମାନେ ମିନୋଟରର ଆହାରପାଇଁ ଉପଯୁକ୍ତ ।

ରାଜା ମାଇନସ ସେମାନଙ୍କୁ ପରୀକ୍ଷା କରି ଦେଖୁଥିବାବେଳେ ତାଙ୍କର ସୁନ୍ଦରୀ କନ୍ୟା ଏରିଏଡିନ ସେଠାରେ ଥିଲେ । ଥିସିଅସ୍‌ଙ୍କ ସୁନ୍ଦର ରୂପ ଓ ଦେହର ଗଠନ ଦେଖି ସେ ମୁଗ୍ଧ ହୋଇଗଲେ । ସେ ମନେ ମନେ ଭାବିଲେ, 'ଏପରି ସୁନ୍ଦର ବୀର ଯୁବକ ମିନୋଟରର ଆହାରପାଇଁ ଜନ୍ମ ହୋଇନାହିଁ । ମୁଁ ତାଙ୍କ ପାଖରେ ମୋର ମନ ପ୍ରାଣ ସମର୍ପଣ କରିଦେଇଛି । ବାପା ତାଙ୍କୁ ମିନୋଟରର ଆହାରପାଇଁ ପଠାଇବେ; କିନ୍ତୁ ସେ ଯେପରି ମିନୋଟରକୁ ବଧ କରି ନିରାପଦରେ ଫେରିଆସିବେ, ସେ ଦିଗରେ ମୁଁ ଯଥାସାଧ୍ୟ ସାହାଯ୍ୟ କରିବି ।'

ଏରିଏଡିନ ସୁବିଧା ଦେଖି ଥିସିଅସ୍‌ଙ୍କୁ କହିଲେ, ''ମିନୋଟର ଯେଉଁ ବନ୍ଦିଶାଳାରେ ଅଛି, ତାହା ଏପରି ନିର୍ମିତ ଯେ ସେଥିରେ ଅନେକ ଦ୍ୱାର ଅଛି; ଯେକୌଣସି ଦ୍ୱାରବାଟେ ପ୍ରବେଶକଲେ ବନ୍ଦିଶାଳାର ମଧ୍ୟଭାଗରେ ଥିବା ମିନୋଟରର ସଙ୍ଗେ ଭେଟ ହେବ; କିନ୍ତୁ ଶତ ଚେଷ୍ଟା କଲେ ସୁଦ୍ଧା ବାହାରି ହେବନାହିଁ । ଏପରିକି



ଯେଉଁ ଇକାରସ ଏହି ଅଦ୍ଭୁତ ବନ୍ଦିଶାଳାକୁ ନିର୍ମାଣ କରିଥିଲେ ସେ ନିଜେ ସେଥିରୁ ବାହାରିପାରି ନଥିଲେ । ତୁମେ ବୀରପୁରୁଷ, ମିନୋଟରକୁ ତୁମେ ବଧ କରିବ ବୋଲି ମୋର ବିଶ୍ୱାସ । ତୁମେ ଗୋଟିଏ ଖଣ୍ଡା ଘେନି ବନ୍ଦିଶାଳାର ଦ୍ୱାରବାଟେ ପ୍ରବେଶ କରିବ । ମୁଁ ଗୋଟିଏ ସୂତାପିଣ୍ଡୁଳା ଧରି ଦ୍ୱାରଦେଶରେ ଥିବି । ପ୍ରବେଶ କଲାବେଳେ

ତୁମେ ସେହି ସୂତାର ଅଗ୍ରଭାଗଟି ଧରି ଯିବ । ମୁଁ ପିଣ୍ଡୁଳାକୁ ଧରି ଦ୍ୱାରପାଖରେ ଛିଡ଼ା ହୋଇ ରହିବି ଓ ଧୀରେ ଧୀରେ ସୂତା ଫିଟୁଥିବ । ମିନୋଟରକୁ ଦେଖିଲାମାତ୍ରେ ତୁମେ ତା ଉପରେ ଖଡ୍‌ଗଦ୍ୱାରା ଆଘାତ କଲେ ସେ ମୃତ୍ୟୁମୁଖରେ ପଡ଼ିବ । ତତ୍‌ପରେ, ତୁମେ ସୂତାକୁ ଧରି ଧରି ଫେରିଆସି ମୋ ନିକଟରେ ପହଞ୍ଚିବ ।''

ଏରିଏଡିନଙ୍କର ଏହି ସାହାଯ୍ୟ ନିମନ୍ତେ ଥିସିଅସ୍ ତାଙ୍କୁ ଧନ୍ୟବାଦ ଦେଲେ । ଏରିଏଡିନ ସୂତାପିଣ୍ଡୁଳା ଧରି ଦ୍ୱାରଦେଶରେ ଛିଡ଼ା ହୋଇ ରହିଲେ ଓ ଥିସିଅସ୍ ଏହାର ଗୋଟିଏ ପ୍ରାନ୍ତ ଧରି ବନ୍ଦିଶାଳାରେ ପ୍ରବେଶ କଲେ । ସେ ଅସିର ପ୍ରଚଣ୍ଡ ଆଘାତରେ ମିନୋଟରକୁ ବଧ କରି ପୁଣି ସୂତାକୁ ଧରି ଧରି ଦ୍ୱାର ଦେଶକୁ ଫେରିଆସିଲେ । ଥିସିଅସ୍‌ଙ୍କୁ ଦେଖି ଏରିଏଡିନର ଯେ କି ଆନନ୍ଦ କଥାରେ କହିହେବନାହିଁ । ଥିସିଅସ୍‌ଙ୍କ ମନରେ ମଧ୍ୟ ଗର୍ବର ସୀମା ରହିଲାନାହିଁ । ଯେଉଁ ରାକ୍ଷସ ଏତେ ଯୁବକ-ଯୁବତୀଙ୍କର ମରଣର କାରଣ ହୋଇଥିଲା, ଆଜି ସେ ତାକୁ ବଧ କରିଛନ୍ତି ।

ମିନୋଟରର ବଧ ଖବର ସହର ମଧ୍ୟରେ ବ୍ୟାପିବା ବେଶୀ ବେଳ ଲାଗିଲା ନାହିଁ । ମିନୋଟରକୁ ହତ୍ୟା କରିବାକୁ ରାଜାଙ୍କର ଇଚ୍ଛା ନଥିଲା । ଯେତେବେଳେ ସେ ଶୁଣିଲେ ଯେ ମିନୋଟରର ଆହାର ନିମନ୍ତେ ପଠାଯାଇଥିବା ଯୁବକ ଥିସିଅସ୍ ଓଲଟି ତାକୁ ବଧକରି ଫେରିଆସିଛି, ସେତେବେଳେ ସେ କ୍ରୋଧାନ୍ଧ ହୋଇଉଠିଲେ । କାଳେ ରାଜା ମାଇନସ ତାଙ୍କୁ ଏଥିପାଇଁ ଦଣ୍ଡ ଦେବେ ଏହି ଭୟରେ ଥିସିଅସ୍ କ୍ରୀଟ୍ ରାଜ୍ୟରେ ଆଉ ମୁହୂର୍ତ୍ତେ ହେଲେ ରହିବା ଉଚିତ ମନେକଲେନାହିଁ । ଏପରିକି ତାଙ୍କର ସାହାଯ୍ୟକାରିଣୀ ଏରିଏଡିନଙ୍କୁ ମଧ୍ୟ ପଦେ କହି ଆସିବାକୁ ସମୟ ପାଇଲେନାହିଁ । ସେ ଜାହାଜରେ ବସି ଏଥେନ୍‌ସ ଅଭିମୁଖରେ ଚାଲିଲେ ।

ତାଙ୍କର ସେତେବେଳର ମନର ଅବସ୍ଥା କେବଳ ଅନୁମାନ କରାଯାଇପାରେ । ଏକପକ୍ଷରେ ମିନୋଟରକୁ ବଧ କରିଥିବାରୁ ମନରେ ଆନନ୍ଦ ଓ ଗର୍ବ, ଏରିଏଡିନଙ୍କ ସାହାଯ୍ୟ ନିମନ୍ତେ ତାଙ୍କ ପ୍ରତି କୃତଜ୍ଞତା ଓ ଅପରପକ୍ଷରେ କ୍ରୀଟ୍‌ର ରାଜା ମାଇନସଙ୍କର ତାଙ୍କ ପ୍ରତି କ୍ରୋଧ— ଏସବୁ କଥା ତାଙ୍କ ମନକୁ ଏପରି ଅଧିକାର କରିଥିଲା ଯେ ସେ ଜାହାଜର ପାଲ ପରିବର୍ତ୍ତନ କରିବାକୁ ଭୁଲିଗଲେ ।

କ୍ରମେ ଜାହାଜଟି ଏଥେନ୍‌ସର ନିକଟବର୍ତ୍ତୀ ହେଲା । ରାଜା ଏଜିଅସ ପ୍ରାସାଦ ଉପରେ ବସି ସମୁଦ୍ର ଆଡ଼କୁ ଚାହିଁରହିଥିଲେ । ଦୂରରୁ ଜାହାଜ ଆସୁଥିବାର ସେ ଦେଖିପାରିଲେ । ସେ ଲକ୍ଷ୍ୟକଲେ ଯେ ଜାହାଜର ପାଲଗୁଡ଼ିକର ରଙ୍ଗ କଳା । ତେଣୁ ଥିସିଅସ୍ ମିନୋଟରଦ୍ୱାରା ନିହତ ହୋଇଥିବା ସ୍ଥିର କରି ସେ ପାଗଳପ୍ରାୟ ହୋଇଗଲେ । ଥିସିଅସ୍ ଭଳି ବୀର ପୁତ୍ରକୁ ହରାଇ ପ୍ରାଣ ଧରି ରହିବା ତାଙ୍କ ପକ୍ଷରେ ଅସମ୍ଭବ ବୋଧ ହେଲା । ସେ ପ୍ରାସାଦଉପରୁ ତଳକୁ ଡେଇଁପଡ଼ି ଆତ୍ମହତ୍ୟା କଲେ ।

ଜାହାଜ କୂଳରେ ଲାଗିଲା । ଥିସିଅସ୍ ପିତାଙ୍କ ମୃତ୍ୟୁରେ ନିତାନ୍ତ ଦୁଃଖିତ ହେଲେ । ନିଜର ଅସାବଧାନତାହିଁ ପିତାଙ୍କର ମୃତ୍ୟୁର କାରଣ ଜାଣି ସେ ଘୋର ଅନୁତାପ କଲେ; କିନ୍ତୁ ସେତେବେଳକୁ ପ୍ରତିକାରର କୌଣସି ପନ୍ଥା ନଥିଲା । ଏଜିଅସଙ୍କ ମୃତ୍ୟୁ ପରେ ଥିସିଅସ୍ ଏଥେନ୍‌ସର ରାଜସିଂହାସରେ ବସି ଦୀର୍ଘକାଳ ପର୍ଯ୍ୟନ୍ତ ପ୍ରଜାମାନଙ୍କୁ ପାଳନ କଲେ । ପ୍ରଜାମାନେ ତାଙ୍କ ସୁଶାସନର ପ୍ରଶଂସା କରି ତାଙ୍କୁ ଧନ୍ୟ ଧନ୍ୟ କଲେ ।

—

# ଡାଇଓନିସସ୍ ଓ ରାଜା ମିଦାସ

ଡାଇଓନିସସ୍ ହେଉଛନ୍ତି ମଦ୍ୟର ଦେବତା । ସେ ସର୍ବଦା ଆନନ୍ଦରେ ବୁଲୁଥାନ୍ତି । ସଂସାରର ସୁଖ-ଦୁଃଖ ବିଷୟରେ ତାଙ୍କର ଚିନ୍ତା ନଥାଏ । ଦିନେ ସେ କ୍ରୀଟ୍‌ର ସମୁଦ୍ର କୂଳରେ ବୁଲୁ ବୁଲୁ ଗୋଟିଏ ଅପୂର୍ବ ସୁନ୍ଦରୀ କନ୍ୟାକୁ ଦେଖିଲେ । କନ୍ୟାଟି ବିମର୍ଷ ଭାବରେ ସମୁଦ୍ରକୁ ଚାହିଁ ବସିଥିଲା । ଏହି କନ୍ୟାଟି ହେଉଛି କ୍ରୀଟ୍‌ର ରାଜା ମାଇନସଙ୍କର କନ୍ୟା । ଏଥିପୂର୍ବରୁ ସେ ଥିସିଅସ୍‌ଙ୍କ ରୂପରେ ମୁଗ୍ଧ ହୋଇ ତାଙ୍କୁ ବିବାହ କରିବ ବୋଲି ମନେ ମନେ ସ୍ଥିର କରିଥିଲା । କିନ୍ତୁ ଥିସିଅସ ମିନୋଟରକୁ ହତ୍ୟା କରିବା ପରେ ରାଜା ମାଇନସଙ୍କ ଭୟରେ ପଳାଇଗଲେ । ସେହି ଦୁଃଖରେ ଏରିଏଡିନ ସମୁଦ୍ର କୂଳରେ ବସି କାନ୍ଦୁଥିଲା ।

ଡାଇଓନିସସ୍ ତାର ଦୁଃଖର କାରଣ ଜାଣିପାରି ତାର ମନ ପରିବର୍ତ୍ତନ କରିବାକୁ ଚେଷ୍ଟା କଲେ । ସହଜେ ତ ଡାଇଓନିସସ୍ ସୁନ୍ଦର ଯୁବକ, ତାଙ୍କ ସହିତ କିଛି ସମୟ ରହିବା ପରେ ସତକୁ ସତ ଏରିଏଡିନର ମନ ବଦଳିଗଲା । ସେ କ୍ରମେ ଥିସିଅସ୍‌ଙ୍କ କଥା ଭୁଲିଗଲା ଓ ଡାଇଓନିସସ୍‌ଙ୍କ ସହିତ ଆମୋଦ ପ୍ରମୋଦରେ ରତ ହେଲା ।

କିଛିକାଳ ପରେ ସେ ଦୁହିଁଙ୍କ ମଧ୍ୟରେ ପ୍ରଗାଢ଼ ପ୍ରଣୟ ଜାତ ହେଲା ଓ ଦୁହେଁ ପରସ୍ପରକୁ ବିବାହ କଲେ । ଦୁହିଁଙ୍କ ଜୀବନ ଖୁବ୍ ଆନନ୍ଦରେ ଅତିବାହିତ ହେଲା । କିନ୍ତୁ ଏ ଦୁହିଁଙ୍କ ମଧ୍ୟରେ ଗୋଟିଏ ବିଶେଷ ପାର୍ଥକ୍ୟ ଥିଲା । ଡାଇଓନିସସ୍ ଦେବତା; ତେଣୁ ସେ ଅମର । କିନ୍ତୁ ଏରିଏଡିନ୍ ରାଜାଙ୍କ ଝିଅ ହେଲେ ସୁଦ୍ଧା ମନୁଷ୍ୟ, ତେଣୁ ମରଣଶୀଳ । ଦିନେ ନା ଦିନେ ତାଙ୍କର ମୃତ୍ୟୁ ହେବା ନିଶ୍ଚିତ । ସେହି ମୃତ୍ୟୁ ଆସିଲେ ସେ ଦୁହିଁଙ୍କର ବିଚ୍ଛେଦ ହେବ; ଏହି ଚିନ୍ତାରେ ସେମାନେ ବ୍ୟାକୁଳ ଥିଲେ ।

ଅନେକ ବର୍ଷଯାଏ ସେ ଦୁହେଁ ସୁଖରେ ଜୀବନ କଟାଇଲେ । କ୍ରମେ ଏରିଏଡିନଙ୍କର ବାର୍ଦ୍ଧକ୍ୟ ଉପସ୍ଥିତ ହେଲା ଓ ସେ ଦିନେ ପ୍ରାଣତ୍ୟାଗ କଲେ । ପତ୍ନୀଙ୍କ ବିୟୋଗରେ ଡାଇଓନିସସ୍ ଅନେକଦିନ ପର୍ଯ୍ୟନ୍ତ ମନ ଦୁଃଖରେ ରହିଥିଲେ ।

ଏହି ଡାଇଓନିସସ୍‌ଙ୍କର ଗୁରୁ ଥିଲେ ସାଇଲେନସ । ସେ ତାଙ୍କୁ ବିଶେଷ ଭକ୍ତି କରୁଥିଲେ । ସାଇଲେନସ ଯେପରି ଜ୍ଞାନୀ ସେହିପରି ଗୁଣୀ ଥିଲେ । ତେଣୁ ସେ ସମସ୍ତଙ୍କର ଶ୍ରଦ୍ଧାଭାଜନ ହୋଇଥିଲେ । ସେତେବେଳେ ଫ୍ରିଜିଆ ପ୍ରଦେଶରେ ମିଦାସ ନାମରେ ଜଣେ ରାଜା ରାଜପଣ କରୁଥିଲେ । ତାଙ୍କର କେତେକ ଭଲ ଗୁଣ ଥିଲେହେଁ

ସେ ସେତେ ବୁଦ୍ଧିମାନ୍ ନଥିଲେ । ଏହି ବୁଦ୍ଧିହୀନତା ଯୋଗୁ ତାଙ୍କୁ ସମୟ ସମୟରେ ବିଶେଷ ଅସୁବିଧା ଭୋଗିବାକୁ ପଡୁଥିଲା ।

ସାଇଲେନସ ଓ ରାଜା ମିଦାସଙ୍କ ଭିତରେ ଭଲ ବନ୍ଧୁତା ଥିଲା । ସାଇଲେନସ ରାଜାଙ୍କୁ ବେଳେ ବେଳେ ସତ୍ ପରାମର୍ଶ ଦେଉଥିଲେ । ରାଜା ମଧ୍ୟ ଆବଶ୍ୟକ ସମୟରେ ସାଇଲେନସଙ୍କର ଅଭାବ ଦୂରକରୁଥିଲେ ।

ଡାଇଓନିସସ୍ ଜାଣିପାରିଲେ ଯେ ରାଜା ମିଦାସ ତାଙ୍କ ଗୁରୁ ସାଇଲେନସଙ୍କୁ ଖୁବ୍ ସାହାଯ୍ୟ କରୁଅଛନ୍ତି । ତେଣୁ ସେ ରାଜା ମିଦାସଙ୍କ ଉପରେ ସନ୍ତୁଷ୍ଟ ହୋଇ ଦିନେ ତାଙ୍କୁ ଦେଖାଦେଇ ପଚାରିଲେ, "ତୁମେ ମୋ ଗୁରୁଙ୍କୁ ସାହାଯ୍ୟ କରୁଥିବାର ଜାଣି ମୁଁ ତୁମ ଉପରେ ସନ୍ତୁଷ୍ଟ ହୋଇଅଛି । ମୁଁ ତୁମକୁ ଗୋଟିଏ ବର ଦେବାକୁ ଇଚ୍ଛା କରେ । କଅଣ ଚାହଁ, ମାଗ ।"

ମିଦାସଙ୍କର ସୁନା ପ୍ରତି ଅତିରିକ୍ତ ଲୋଭ ଥିଲା । ତେଣୁ ସେ କହିଲେ, "ତୁମେ ମୋତେ ଏହି ବର ଦିଅ ଯେ ମୁଁ ଯାହା ଛୁଇଁବି ତାହା ସୁନା ହୋଇଯିବ ।"

ଡାଇଓନିସସ୍ କହିଲେ, "ତୁମେ ଯେଉଁ ବର ମାଗିବ ତାହା ଦେବାକୁ ମୁଁ କହିଛି । ତେଣୁ ତୁମ ଇଚ୍ଛା ପୂରଣ କରିବାକୁ ମୁଁ ପ୍ରସ୍ତୁତ । କିନ୍ତୁ ଏହି ବର ପାଇଲେ ତୁମେ ସୁଖୀହୋଇ ପାରିବନାହିଁ । ତେଣୁ ଭାବିଚିନ୍ତି ଅନ୍ୟ ବର ମାଗ ।"

କିନ୍ତୁ ମିଦାସ ଭାବିଲେ, "ମୁଁ ଯାହା ମାଗିଛି ତାହାଠାରୁ ଭଲ ବର ଅନ୍ୟ କିଛି ହୋଇନପାରେ । ଯାହା କିଛି ମୁଁ ଛୁଇଁବି, ତାହା ସୁନା ହୋଇଯିବ । ମୋ ଘରଦ୍ୱାର, ବାସନ, ଚୌକି, ଟେବୁଲ ଏପରିକି ମୋର ଗଛ ପତ୍ର ମଧ୍ୟ ସୁନାର ହୋଇଯିବ । ତାହାହେଲେ ମୁଁ ପୃଥିବୀରେ ସବୁଠାରୁ ବଡ଼ ରାଜା ହେବି । ଏହାଠାରୁବଳି ଆଉ କି ଭଲ ବର ହୋଇପାରେ ?"

ଏହିପରି ଭାବି ସେ କହିଲେ, "ବହୁତ ଭାବିଚିନ୍ତି ମୁଁ ଏହି ବର ମାଗୁଛି । ଏହା ଛଡ଼ା ଅନ୍ୟ କିଛି ଲୋଡ଼ାନାହିଁ ।" ଡାଇଓନିସସ୍ କହିଲେ, "ହେଉ, ତୁମର ଇଚ୍ଛା ଅନୁସାରେ ମୁଁ ତୁମକୁ ବର ଦେଉଛି ଯେ କାଲି ସକାଳୁ ତୁମେ ଯାହା କିଛି ଛୁଇଁବ ତାହା ସୁନାରେ ପରିଣତ ହୋଇଯିବ । ତଥାପି ମୁଁ କହିରଖୁଛି, ଯଦି ଏହି ବର ହେତୁ ତୁମେ କିଛି ବିପଦରେ ପଡ଼ିବ ମୋତେ ସ୍ମରଣ କରିବ । ମୁଁ ଆସି ତୁମକୁ ସାହାଯ୍ୟ କରିବି ।"

ମିଦାସ କୃତକୃତ୍ୟ ହୋଇ ଡାଇଓନିସସ୍‌ଙ୍କୁ ପ୍ରଣାମ କରି ରହିଲେ । ଡାଇଓନିସସ୍ ଚାଲିଗଲେ ।

ରାଜା ମିଦାସଙ୍କର ମନ ଅସ୍ଥିର । ସେ ଦିନଟା ତାଙ୍କୁ ଯୁଗପରି ଲାଗିଲା । ରାତିରେ ତାଙ୍କୁ ଆଦୌ ନିଦ ହେଲାନାହିଁ । କେତେବେଳେ ରାତି ପାହିବ ଓ ଯାହ ଛୁଇଁବେ ତାହା ସୁନା ହୋଇଯିବ, ଏହି ଚିନ୍ତାରେ ସେ ମୁହୂର୍ତ୍ତେ ଶୋଇପାରିଲେନାହିଁ ।

କୌଣସିମତେ ରାତି ପାହିଲା । ରାଜା ଉଠିପଡ଼ି ଆଗେ ଘରର ଜିନିଷପତ୍ର ଛୁଇଁଗଲେ । କିନ୍ତୁ ସେଗୁଡ଼ିକ ସୁନା ହେଲାନାହିଁ । ତାଙ୍କର ସନ୍ଦେହ ହେଲା, ଡାଇଓନିସସ୍ କଅଣ ତାଙ୍କୁ ଠକି ଦେଇ ଗଲେ ? ସୂର୍ଯ୍ୟକିରଣ ପଡ଼ିଲା । ରାଜା ପୁଣିଥରେ ଘରର ଆସବାବପତ୍ର ଉପରେ ହାତ ମାରିଲେ । ଚାହୁଁ ଚାହୁଁ ସେସବୁ ସୁନା ହୋଇଗଲା । ଏବେ ତାଙ୍କର ବିଶ୍ୱାସ ହେଲା, ଡାଇଓନିସସ୍ ତାଙ୍କୁ ଠକିଦେଇ ଯାଇନାହାନ୍ତି । ସେ ତାଙ୍କ ଇଚ୍ଛା ଅନୁସାରେ ବର ପାଇଛନ୍ତି ।

ମିଦାସ ସବୁକଥା ଭୁଲିଯାଇ ଘର ବାରି ବୁଲି ପ୍ରତ୍ୟେକ ଜିନିଷକୁ ଛୁଇଁ ସୁନାରେ ପରିଣତ କରିବାକୁ ଲାଗିଲେ । ଚାକର ଜଳଖିଆ ଖାଇବାକୁ ଡାକିଲା, କିନ୍ତ ସେ ପରେ ଖାଇବେ ବୋଲି କହି ବଗିଚାର ଗଛଗୁଡ଼ିକୁ ମଧ୍ୟ ସୁନାର ଗଛ କରିଦେଲେ ।

ଦୁଇ ପହର ବେଳକୁ ରାଜା ବୁଲି ବୁଲି କ୍ଳାନ୍ତ ହୋଇ ଘରକୁ ଆସିଲେ । ସୁନାର ଘରେ ସୁନାର ଆସବାବ ମଧ୍ୟରେ ସୁନାର ଟେବୁଲ ପାଖେ ସୁନା ଚଉକିରେ ବସି ରାଜା ଖାନା ମଗାଇଲେ । ଚାକର ଖାଇବା ଜିନିଷମାନ ଆଣି ରଖିଦେଲା । କିନ୍ତୁ ଏ କି ବିପଦ ! ରାଜା ଖାଇବାପାଇଁ ଖଣ୍ଡିଏ ରୁଟି ଧରିଲେ, ତାହା ତତ୍‌କ୍ଷଣାତ ସୁନାର ରୁଟି ହୋଇଗଲା । ସେ ଫଳଟିଏ ଉଠାଇଲେ ଖାଇବାକୁ— ତାହା ସୁନା ହୋଇଗଲା । ସୁନାର ରୁଟି କି ସୁନାର ଫଳ କଣ ଖାଇହୁଏ ? ସେ ତାହା ରଖିଦେଇ ଟିକେ ପାଣି ପିଇବାକୁ ଗ୍ଲାସ୍ ଉଠାଇଲେ । ଦେଖିଲେ, ଖାଲି ଗ୍ଲାସ୍‌ଟା ସୁନାର ନୁହେଁ; ସେଥିରେ ଥିବା ପାଣି ସୁଦ୍ଧା ଆଉଟା ସୁନା ହୋଇଯାଇଛି । ରାଜା ଚିନ୍ତିତ ହୋଇପଡ଼ିଲେ । ସେ କଅଣ ଖାଇବେ ? କଅଣ ପିଇବେ ? ନଖାଇ ନପିଇ ବଞ୍ଚିବେ ବା କିପରି ?

ଏହି ସମୟରେ ତାଙ୍କ ସାନ ଝିଅଟି ଦଉଡ଼ି ଆସି କହିଲା, ''ବାପା, ବାପା, ଆମ ବଗିଚାଟାକୁ କିଏ ଖରାପ କରିଦେଇଚି । ସବୁଗଛ ହଳଦିଆ ଦିଶୁଛି । ମୁଁ ସେ ହଳଦିଆ ଗୋଲାପ ଫୁଲଟା ଛିଣ୍ଡାଇପାରିଲିନାହିଁ ।''

ରାଜା ମନଦୁଃଖରେ ଝିଅକୁ କୋଳକୁ ଟାଣିଆଣିଲେ । ଏ କି ସର୍ବନାଶ—ପିଲାଟି ଗୋଟିଏ ସୁନାର ପିତୁଳା ହୋଇଗଲା । ଏପରିକି ତାର ରେଶମ ଭଳି ସରୁ କେଶ ମଧ୍ୟ ସୁନାର ସରୁ ତାର ପରି ହୋଇଗଲା । ରାଜା ଭୋ-ଭୋ କରି କାନ୍ଦିଉଠିଲେ । ତାଙ୍କ ତୁଣ୍ଡରୁ ବାହାରି ପଡ଼ିଲା, ''ହେ ଦେବତା, ମୁଁ ଏ ଦୁଃଖ ଆଉ ସହିପାରିବିନାହିଁ । ମୋ ଝିଅଟିକୁ ହରାଇ ସୁନା ପ୍ରତିମା ନେଇ ମୁଁ କଅଣ କରିବି ? ଦୟାକରି ତୁମ ବର ଫେରାଇ ନିଅ । ମୁଁ ସୁନା ଚାହେଁନାହିଁ ।''

ଡାଇଓନିସସ୍‌ଙ୍କର ଦୟା ହେଲା । ସେ ରାଜାଙ୍କ ଆଗରେ ଉଭା ହୋଇ କହିଲେ, ''ମିଦାସ, ମୁଁ ତୁମକୁ ପରା କହିଥିଲି, ଏ ବରରେ ତୁମେ ସୁଖୀ ହୋଇପାରିବନାହିଁ ।'' ଏବେ ବୁଝୁଥିବ, ମୋ କଥା ସତ । ଯାହାହେଉ ଏବେ ତୁମେ ନିଜର ବୋକାମି

ବୁଝୁଥିବ । ଯାଅ, ପେକୋଟ୍‌ଲସ ନଦୀରେ ସ୍ନାନ କରି ଆସ ଓ ତାହାର ପାଣି ଆଣି ଯାହା ସବୁ ସୁନା କରିଛ, ତା ଉପେର ସିଞ୍ଚିଦିଅ, ସେସବୁ ନିଜର ପୂର୍ବରୂପ ଫେରିପାଇବେ ।''

ରାଜା ନଦୀକୁ ଦଉଡ଼ିଯାଇ ସେଥିରେ ବୁଡ଼ିଲେ ଓ ନଦୀରୁ ମାଠିଆରେ ପାଣି ଆଣି ଆଗେ ଝିଅ ଉପରେ ଢାଳିଦେଲେ । ଝିଅ ପୂର୍ବରୂପ ଫେରିପାଇ ପାଟି କଲା, ''ବାପା, ଏ କଅଣ, ମୋତେ ଓଦା କରି ଦେଉଛ କାହିଁକି ?'' ମିଦାସଙ୍କର ଆନନ୍ଦ କହିଲେ ନସରେ । ସେ ନଦୀର ଜଳ ସିଞ୍ଚି ସବୁ ଜିନିଷକୁ ପୂର୍ବ ପରି କରିଦେଲେ । ସେହି ଦିନଠାରୁ ଆଉ ତାଙ୍କର ସୁନା ଉପରେ ଲୋଭ ରହିଲାନାହିଁ ।

ଏହାର କିଛିକାଳ ପରେ ମିଦାସ ଆଉ ଗୋଟିଏ ବିପଦରେ ପଡ଼ିଲେ । ସୂର୍ଯ୍ୟଦେବତା ଆପୋଲୋ ଗୀତ ବାଦ୍ୟରେ ନିପୁଣ ବୋଲି ଖ୍ୟାତ । ଛାଗମାନଙ୍କ ଦେବତା ପାନ୍ ମଧ ଗୀତବାଦ୍ୟ ଜାଣନ୍ତି । ଏ ଦୁଇ ଦେବତାଙ୍କ ଭିତରେ କାହାର ଗୀତବାଦ୍ୟ ବେଶୀ ଭଲ, ଏ ବିଷୟରେ ବିଚାର ଚାଲିଥିଲା । ରାଜା ମିଦାସ କହିଲେ, ''ପାନ୍‌ଙ୍କର ସଙ୍ଗୀତ ବେଶୀ ମଧୁର । ତା ତୁଳନାରେ ଆପୋଲୋଙ୍କର ସଙ୍ଗୀତ କିଛି ନୁହେଁ ।'' ଆପୋଲୋ ଏହା ଜାଣିପାରି ମିଦାସଙ୍କ ଉପରେ ରାଗିଗଲେ । ସେ କହିଲେ, ''ମୋ ସଙ୍ଗୀତର ମହତ୍ତ୍ୱ ଯେ ନବୁଝି ପାରିଲା, ସେ ମଣିଷ ନହୋଇ ଗଧ ହୋଇଥିବ । ଗଧର କାନ କି ସଙ୍ଗୀତର ଭଲ ମନ୍ଦ ବୁଝିପାରେ ? ଏ ମିଦାସ ମୋ ସଙ୍ଗୀତର ମାହାତ୍ମ୍ୟ ବୁଝିପାରିଲାନାହିଁ । ତାର କାନ ଗଧକାନ ହୋଇଯାଉ ।''

ଆପୋଲୋଙ୍କ ଅଭିଶାପରେ ମିଦାସଙ୍କର କାନ ଦୁଇଟି ଗଧକାନ ପରି ଲମ୍ବ ହୋଇଗଲା । କାନ ଉପରଯାକ ରୁମ ହୋଇଗଲା । ଗଧକାନ ଘେନି ରାଜା ମିଦାସ କାହାକୁ ଦେଖାଦେବାପାଇଁ ଲଜ୍ଜା ଅନୁଭବ କଲେ । ସେ କାନକୁ ଲୁଚାଇବାପାଇଁ ଚେଷ୍ଟା କଲେ । ମୁଣ୍ଡର ବାଳରେ କାନକୁ ଘୋଡ଼ାଇ ସେ ତା ଉପରେ ପଗଡ଼ି ବ୍ୟବହାର କଲେ । ତେଣୁ ଲୋକେ ତାଙ୍କ କାନ ଦେଖିପାରିଲେନାହିଁ । ରାଜାଙ୍କର କାନ ଦୁଇଟା ଯେ ଗଧ କାନ, ଏକଥା ବାହାର ଲୋକେ ଜାଣିପାରିଲେନାହିଁ । କିନ୍ତୁ ଜଣେ ଲୋକଠାରୁ କଥାଟା ଲୁଚାଇ ହେଲାନାହିଁ ।

ରାଜାଙ୍କ ମୁଣ୍ଡର ବାଳ ଖୁବ୍ ବଢ଼ିଯିବାରୁ ତାହା କାଟିବା ଦରକାର ହେଲା । ବାରିକ ଡକା ହୋଇ ଆସିଲା । ଗୋଟାଏ ନିର୍ଜନ ଘରେ ବାରିକ ରାଜାଙ୍କ ବାଳ କତୁରିଲା । ସେ ରାଜାଙ୍କର ଗଧ କାନ ଦେଖି ଆଶ୍ଚର୍ଯ୍ୟ ହୋଇଗଲା । ହସମାଡୁଥିଲେ ମଧ ରାଜାଙ୍କ ଭୟରେ ହସିପାରିଲାନାହିଁ । ରାଜା ତାକୁ କହିଲେ, ''ସାବଧାନ, ତୁ ମୋର ଗଧକାନ ଦେଖିଛୁ ବୋଲି କାହାରି ଆଗେ କହିବୁନାହିଁ । ଯଦି ଏ ବିଷୟ ବାହାରେ ଜଣାପଡ଼େ ତୋତେ ସବଂଶରେ ମାରିଦିଆଯିବ ।'' ବାରିକ ବିଚରା ପ୍ରତିଜ୍ଞା

କରି କହିଲା, ''ହଜୁର, ମୁଁ ଏକଥା କାହାରି ଆଗେ ପ୍ରକାଶ କରିବିନାହିଁ । ଯଦି ଏକଥା ଅନ୍ୟ କେହି ମୋଠାରୁ ଶୁଣିଥିବାର ଜଣାପଡ଼େ ତେବେ ହଜୁର ମୋତେ ସବଂଶରେ ପ୍ରାଣଦଣ୍ଡ ଦେବେ ।''

ବାରିକ ଚାଲିଗଲା ସତ, କିନ୍ତୁ ସେ ବରାବର ଭାବୁଥାଏ ଯେ ରାଜାଙ୍କର କାନ ମଣିଷ କାନନୁହେଁ, ଗଧ କାନ । ବେଳକୁ ବେଳ ଏପରି ହେଲା ଯେ ସେ ଏଇ କଥାଟି ଅନ୍ୟ କାହାକୁ କହିବାପାଇଁ ଅଥୟ ହେଲା । ଏଣେ ତାର ଭୟ, କହିଦେଲେ ରାଜା ତାକୁ ବଂଶ ସହିତେ ମାରିଦେବେ । ତେଣୁ ସେ କାହାରିକୁ ଏହା କହିପାରୁ ନଥାଏ । ତା'ର ମନେହେଲା ଏ କଥାଟି କାହାକୁ ନକହିଲେ ତାର ଛାତି ଫାଟିଯିବ । ତେଣୁ ସେ ଗୋଟିଏ ଉପାୟ ପାଞ୍ଚିଲା । ଘରଠାରୁ ଦୂରକୁ ଯାଇ ସେ ଗୋଟିଏ ପଡ଼ିଆରେ ଗଭୀର ଗାତଟିଏ ଖୋଳିଲା । ତାପରେ ଗାତ ମୁହଁରେ ଚୁପ୍ ଚୁପ୍ କରି କହିଲା, ''ରାଜା ମିଦାସଙ୍କର କାନ ହେଉଛି ଗଧ କାନ ।'' ଏହା କହିଲା ପରେ ତାର ମନ ଟିକିଏ ଉଶ୍ୱାସ ହେଲା । ସେ ଗାତକୁ ପୋତିଦେଇ ଘରକୁ ଚାଲିଆସିଲା ।

କିଛି ଦିନ ଗଲା । ଗାତର ମାଟି ଉପରେ ବର୍ଷା ପାଣି ପଡ଼ିବାରୁ ଘାସ ବୁଦା ଉଠିଲା । ସେ ଘାସ ବୁଦା ବାଟେ ପବନ ବହିଲାବେଳେ ସେଥିରୁ ଶବ୍ଦ ବାହାରିଲା, ''ରାଜା ମିଦାସଙ୍କର କାନ ଦୁଇଟା ଗଧର କାନ, ରାଜା ମିଦାସଙ୍କର କାନ ଦୁଇଟା ଗଧର କାନ ।''

ରାଜା ଭାବିଥିଲେ ଯେ ବାରିକ ନକହିଲେ ତାଙ୍କ ଗଧ କାନ କଥା କେହି ଜାଣିବେ ନାହିଁ । କିନ୍ତୁ ପବନରେ ଯାଇ ଏହି କଥା ସମସ୍ତଙ୍କ ଆଗରେ ପ୍ରଚାରିତ ହୋଇଗଲା । ସମଗ୍ର ରାଜ୍ୟରେ ଲୋକେ ଜାଣିଗଲେ ଯେ ସୁନ୍ଦର ପଗଡ଼ି ତଳେ ରାଜା ତାଙ୍କର ଗଧର କାନକୁ ଲୁଚାଇଅଛନ୍ତି ।

ରାଜା ଏବେ କାହାକୁ ଦଣ୍ଡ ଦେବେ ? ଜୀବନଯାକ ତାଙ୍କୁ ଲାଜ ଓ ଅପମାନ ସହିବାକୁ ପଡ଼ିଲା ।

---

# କିଉପିଡ୍ ଓ ସାଇକି

ଗ୍ରୀକ୍‌ମାନଙ୍କର ପ୍ରେମର ଦେବତା ହେଉଛନ୍ତି ଏରସ । ତାଙ୍କର ଅନ୍ୟ ଏକ ନାମ କିଉପିଡ୍ । ସେ ସବୁବେଳେ ଧନୁଶର ଧରି ବୁଲୁଥାନ୍ତି । କୌଣସି ଯୁବକ-ଯୁବତୀଙ୍କ ଦେହରେ ତାଙ୍କର ଶର ବାଜିଲେ ସେ ଦୁହେଁ ପରସ୍ପରକୁ ପ୍ରେମ କରିବା ସୁନିଶ୍ଚିତ । ଶର ମାରିବା ପୂର୍ବରୁ ସେ ତାର ଗୋଟିଏ ମନ୍ତୁରା ହୋଇଥିବା ମୁନକୁ ତେଲରେ ବୁଡ଼ାଇଦେଉଥିଲେ ।

ଜଣେ ରାଜାଙ୍କର ତିନୋଟି ଝିଅ ଥିଲେ । ସବୁ ଝିଅଗୁଡ଼ିକ ଥିଲେ ଅତିସୁନ୍ଦରୀ । କିନ୍ତୁ ସେମାନଙ୍କ ଭିତରେ ସବା ସାନ୍‌ଝିଅ ସାଇକିର ସୌନ୍ଦର୍ଯ୍ୟ ଅତୁଳନୀୟ ଥିଲା । ଲୋକେ ତାର ରୂପ ଦେଖି ଆଶ୍ଚର୍ଯ୍ୟ ହୋଇଯାଉଥିଲେ । ଅନେକ କହୁଥିଲେ, ସ୍ୱର୍ଗର ଦେବୀମାନେ ମଧ୍ୟ ସୁନ୍ଦରପଣରେ ତାର ସମାନ ହେବେନାହିଁ ।

ସୌନ୍ଦର୍ଯ୍ୟର ଦେବୀ ହେଉଛନ୍ତି ଆଫ୍ରୋଡାଇଟ୍ । ସେ ହେଉଛନ୍ତି ପ୍ରେମର ଦେବତା ଏରସଙ୍କର ମାଆ । ଆଫ୍ରୋଡାଇଟ୍ ସାଇକି ରୂପର ପ୍ରଶଂସା ବାରମ୍ବାର ଶୁଣିଲେ । ତାଙ୍କର ମନରେ ହିଂସା ହେଲା । ସେ ସୌନ୍ଦର୍ଯ୍ୟର ଦେବୀ ଥାଉଁ ଥାଉଁ ଜଣେ ସାମାନ୍ୟ ନାରୀର ପ୍ରଶଂସା ସେ ସହ୍ୟ କରିପାରିଲେନାହିଁ । ତେଣୁ ସେ ମନେ ମନେ ତାର ଅନିଷ୍ଟ ପାଞ୍ଚିବାକୁ ଲାଗିଲେ । ଦିନେ ସେ ତାଙ୍କ ପୁଅ ଏରସଙ୍କୁ କହିଲେ, ''ପୁଅ, ତୁ ଇଚ୍ଛା କଲେ ସାଇକିର ରୂପଗର୍ବ ଭାଙ୍ଗିଯିବ । ତୁ ଯାଇ ତାକୁ କୌଣସି ଏକ ଅତି ଅସୁନ୍ଦର ଲୋକ ସହିତ ପ୍ରେମରେ ପକାଇଦେ ।

ମାଆଙ୍କ କଥା ମାନି ଏରସ ସାଇକିର ଘରକୁ ଗଲେ । ସେତେବେଳକୁ ସାଇକି ନିଦରେ ଶୋଇଥିଲା । ଏରସ ଗୋଟିଏ ଶରର ଅଗକୁ ମନ୍ତୁରା ତେଲରେ ବୁଡ଼ାଇ ତାହାକୁ ସାଇକିର ଦେହରେ ଛୁଆଇଁଦେଲେ । ହଠାତ୍ ସାଇକିର ନିଦ ଭାଙ୍ଗିଗଲା । ଏରସ ଘରୁ ପଳାଇଯିବାବେଳକୁ ଦୈବାତ୍ ସେହି ଶରର ଅଗଟି ତାଙ୍କ ନିଜ ହାତର ଆଙ୍ଗୁଠିରେ ବାଜିଲା । ଏହାର ଫଳ ବିଷମୟ ହେଲା । ନିଜେ ଏରସ ସାଇକିର ପ୍ରେମରେ ପଡ଼ିଗଲେ ।

ସାଇକିର ଦୁଇ ବଡ଼ଭଉଣୀ ଦୁଇଜଣ ରାଜପୁତ୍ରଙ୍କୁ ବିବାହ କରିସାରିଥିଲେ— କେବଳ ସାଇକିର ବିବାହ ହୋଇପାରିନଥିଲା । ବହୁ ଚେଷ୍ଟା କରି ମଧ୍ୟ ତାର ବାପ ମାଆ ଜଣେ ଉପଯୁକ୍ତ ବର ପାଇପାରିଲେନାହିଁ । ସେମାନଙ୍କର ଆଶଙ୍କା ହେଲା,

କୌଣସି କାରଣରୁ ଦେବତାମାନେ ବୋଧେ ସାଇକି ଉପରେ ଅସନ୍ତୁଷ୍ଟ ଅଛନ୍ତି । ସେ ଦୁହେଁ ଆପୋଲୋଙ୍କ ମନ୍ଦିରରେ ପୂଜା ଆରାଧନା କରି ତାଙ୍କର ଅନୁଗ୍ରହ ଭିକ୍ଷାକଲେ । ଆପୋଲୋ କହିଲେ– ଯିଏ ସାଇକିକୁ ବିବାହ କରିବ, ସେ ନିକଟବର୍ତ୍ତୀ ଏକ ପର୍ବତରେ ତାକୁ ଅପେକ୍ଷା କରି ରହିଛି । ସାଇକି ଏକୁଟିଆ ସେହି ପର୍ବତ ଶିଖରକୁ ଯିବା ଦରକାର ।

ପିତା ମାତାଙ୍କ ଆଦେଶରେ ସାଇକି ଏକୁଟିଆ ପାହାଡ଼ ଉପରକୁ ଗଲା । ପାହାଡ଼ ଉପରେ ବନ ମଝିରେ ଗୋଟିଏ ସୁନ୍ଦର ଘର ଥିଲା । ଧୀର ପବନରେ ଅଜଣାରେ ସେ ସେହି ଘରେ ପ୍ରବେଶ କଲା । କିନ୍ନରୀମାନେ ଆସି ତାର ସେବା କରିବାକୁ ଲାଗିଲେ, ତାର ସମସ୍ତ ଅଭାବ ପୂରଣ କଲେ । ଠିକ୍ ସନ୍ଧ୍ୟା ପୂର୍ବରୁ ସେମାନେ ସାଇକିକୁ କହିଲେ, ''ଆମେମାନେ ଯାଉଛୁ । ଅନ୍ଧକାର ହେଲାବେଳକୁ ତୁମର ଭାବୀ ସ୍ୱାମୀ ଏଠାକୁ ଆସିବେ । ଆମେ ପୁଣି କାଲି ସକାଳେ ଆସିବୁ ।''

ସେମାନେ ଚାଲିଗଲେ । ଅନ୍ଧାର ଆସିବା ପରେ ସାଇକିର ଭାବୀ ସ୍ୱାମୀ ସତକୁ ସତ ଆସି ତା ନିକଟରେ ଉପସ୍ଥିତ ହେଲେ । ଦୁହିଁଙ୍କ ଭିତରେ କଥାବାର୍ତ୍ତା ହେଲା; କିନ୍ତୁ ତାର ଭାବୀ ସ୍ୱାମୀ ତାକୁ କୌଣସିପ୍ରକାର ଆଲୁଅ ଜାଳିବାକୁ ବାରଣ କଲେ । ରାତି ଶେଷ ହୋଇଗଲାବେଳକୁ ସେ କୁଆଡ଼େ ଚାଲିଗଲେ । ସକାଳୁ କିନ୍ନରୀମାନେ ଆସି ତାର ସେବାରେ ଲାଗିଲେ ।

ଏହିପରି କେତେ ଦିନ ଗଲା । ତାର ଭାବୀ ସ୍ୱାମୀ ଆଲୁଅ ଜାଳିବାକୁ ବାରଣ କରିବାର କାରଣ ସେ ସ୍ଥିର କରିପାରିଲାନାହିଁ । କାହିଁକି ତାର ସ୍ୱାମୀ ତାକୁ ନିଜର ଚେହେରା ଦେଖାଉନାହାନ୍ତି ? ଅନ୍ଧାରରେ ଆସି ଅନ୍ଧାରରେ ଚାଲିଯାଉଛନ୍ତି କାହିଁକି ? ବୋଧହୁଏ ସେ ଦେଖିବାକୁ ନିତାନ୍ତ ଅସୁନ୍ଦର । କାଳେ ତାଙ୍କର କୁତ୍ସିତ ରୂପ ଦେଖି ମୁଁ ତାଙ୍କୁ ଘୃଣା କରିବି, ସେହି ଆଶଙ୍କାରେ କେବଳ ସେ ଅନ୍ଧାରରେ ଆସୁଛନ୍ତି ଓ ଚାଲିଯାଉଛନ୍ତି । ଦିନବେଳା ତ କେବେ ଆସୁନାହାନ୍ତି; ଏପରିକି ରାତିରେ ଆଲୁଅ ଜାଳିବାକୁ ସୁଦ୍ଧା ମନାକରିଛନ୍ତି ।

ତାର ସ୍ୱାମୀ ପ୍ରକୃତରେ କଦାକାର କି ନା, ତାହା ଜାଣିବାପାଇଁ ସାଇକିର ମନ ଅଥୟ ହୋଇ ଉଠିଲା । ସେ ସ୍ୱାମୀଙ୍କର ଆଦେଶ ଲଙ୍ଘନ କରି ଦିନେ ରାତିରେ ସ୍ୱାମୀ ଶୋଇଥିବା ସମୟରେ ଆଲୁଅ ଜାଳି ସ୍ୱାମୀଙ୍କ ମୁହଁକୁ ଚାହିଁଦେଲା । ମୁହୂର୍ତ୍ତକ ଭିତରେ ସେ ଚିହ୍ନିପାରିଲା ଯେ ତାର ସ୍ୱାମୀ ସାଧାରଣ ଦେବତା ନୁହଁନ୍ତି, ସେ ହେଉଛନ୍ତି ସ୍ୱୟଂ ଏରସ, ପ୍ରେମର ଦେବତା ।

ସ୍ୱାମୀଙ୍କ ଆଦେଶ ଲଙ୍ଘନ କରିଥିବାରୁ ସେ ଭୟରେ ତତ୍‌କ୍ଷଣାତ୍ ଦୀପଟି ଲିଭାଇଦେଲା । କିନ୍ତୁ ଦୀପରୁ ଟୋପାଏ ତତଲା ତେଲ ଏରସଙ୍କ ଦେହରେ ପଡ଼ିଯିବାରୁ ସେ ହଠାତ୍ ନିଦରୁ ଉଠିପଡ଼ିଲେ ।



ଏରସ ସାଇକିକୁ ଚାହିଁ କହିଲେ, ''ମୁଁ ତୁମକୁ ଦୀପ ଜାଳିବାକୁ ବାରଣ କରିଥିଲି । କିନ୍ତୁ ତୁମେ ମୋ କଥାରେ ବିଶ୍ୱାସ ନକରି ମୋର ଆଦେଶ ଅମାନ୍ୟ କରିଅଛ । ତେଣୁ ତୁମକୁ ଦଣ୍ଡ ଭୋଗିବାକୁ ପଡ଼ିବ । ମୁଁ ଆଉ ତୁମ ପାଖକୁ ଆସିବିନାହିଁ ।''

ଏହା କହି ଏରସ ସେଠାରୁ ସ୍ୱର୍ଗ ଅଭିମୁଖେ ଚାଲିଲେ । ସାଇକି ତାଙ୍କ ପଛରେ ଦଉଡ଼ିବାକୁ ଚେଷ୍ଟାକଲା । କିନ୍ତୁ ମନୁଷ୍ୟ ପକ୍ଷରେ ସ୍ୱର୍ଗରାଜ୍ୟକୁ ଯିବା ଅସମ୍ଭବ । ତେଣୁ ତାକୁ ବାଧ୍ୟହୋଇ ଫେରିଆସିବାକୁ ହେଲା ।

ଦୁଃଖରେ ନାନାଆଡ଼େ ବୁଲି ସାଇକି ଶେଷରେ ଡିମେଟର ଦେବୀଙ୍କ ମନ୍ଦିରରେ ପହଞ୍ଚିଲା । ଡିମେଟର ହେଉଛନ୍ତି ବୃକ୍ଷଲତା ପ୍ରଭୃତିଙ୍କର ଦେବୀ । ସାଇକିର ବିକଳ

ପ୍ରାର୍ଥନାରେ ଡିମେଟରଙ୍କ ମନ ତରଳିଗଲା । ସେ ସାଇକିକୁ କହିଲେ, ''ତୋର ଦୁଃଖରେ ମୋର ଦୁଃଖ ହେଉଅଛି ସତ, କିନ୍ତୁ ମୁଁ ନିଜେ ତୋ ପାଇଁ କିଛି କରିପାରିବିନାହିଁ । ତୁ ସୌନ୍ଦର୍ଯ୍ୟର ଦେବୀ ଆଫ୍ରୋଡାଇଟଙ୍କ ମନ୍ଦିରକୁ ଯାଇ ତାଙ୍କଠାରୁ କ୍ଷମା ମାଗ । ସେ ତୋ ଉପରେ ବିରକ୍ତ ଥିବାରୁ ଏପରି ଘଟିଛି ।''

ସାଇକି ଆଫ୍ରୋଡାଇଟଙ୍କ ମନ୍ଦିରକୁ ଯାଇ ଦେବୀଙ୍କୁ ନାନାପ୍ରକାରେ ପ୍ରାର୍ଥନା କଲା । କିନ୍ତୁ ସେତେବେଳଯାଏ ଦେବୀଙ୍କର ତା ଉପରେ ରାଗ ରହିଥିଲା । ଏକେ ତ ସୁନ୍ଦରୀ ବୋଲି ଦେବୀଙ୍କର ଈର୍ଷା ଥିଲା । ପୁଣି ତାକୁ ଜଣେ କଦାକାର ଲୋକ ସହିତ ପ୍ରେମରେ ପକାଇବାପାଇଁ ସେ ଯେଉଁ ପୁଅକୁ ପଠାଇଥିଲେ ନିଜେ ତାର ପ୍ରେମରେ ପଡ଼ିଗଲା । ତେଣୁ ତାଙ୍କର ରାଗ କମିନଥିଲା, ବରଂ ବଢ଼ିଯାଇଥିଲା ।

ଆଫ୍ରୋଡାଇଟ୍ କହିଲେ, ''ତୁ ଏରସକୁ ପାଇବାକୁ ମନ କରିଛୁ । କିନ୍ତୁ ତିନୋଟି କାମ କରିନପାରିଲେ ତୁ ତାକୁ ପାଇପାରିବୁନାହିଁ । ପ୍ରଥମ କାମଟି ହେଉଛି ଯେ, ମନ୍ଦିର ଭିତରେ ପକ୍ଷୀମାନଙ୍କପାଇଁ ଯେଉଁ ଦାନା ରଖାଯାଇଛି ସେଥିରେ ନାନା ଜାତିର ଶସ୍ୟ ମିଶିଛି । ତତେ ପ୍ରତ୍ୟେକ ଜାତିର ଶସ୍ୟକୁ ବାଛି ଅଲଗା ଅଲଗା କରିବାକୁ ହେବ ।''

ସାଇକି କିପରି ବିଭିନ୍ନପ୍ରକାର ଶସ୍ୟକୁ ଅଲଗା ଅଲଗା କରିବ ଭାବିପାରିଲା ନାହିଁ । କିନ୍ତୁ ଏରସ ତାଠାରୁ ଦୂରରେ ଥିଲେ ସୁଦ୍ଧା ସାଇକିର ଅବସ୍ଥା ଜାଣିପାରିଥିଲେ । ସେ ଲକ୍ଷ ଲକ୍ଷ ପିମ୍ପୁଡ଼ିଙ୍କୁ ପଠାଇ ଅଳ୍ପ ସମୟ ମଧ୍ୟରେ ଏହି ଅସାଧ୍ୟ କାମ କରାଇଦେଲେ ।

ଆଫ୍ରୋଡାଇଟ୍ ଦେଖିଲେ, ସାଇକି ଏହି ଅଦ୍ଭୁତ କାର୍ଯ୍ୟ କରିଛି । କିନ୍ତୁ ତାଙ୍କର ଉଦ୍ଦେଶ୍ୟ ସଫଳ ନହେବାରୁ ସେ ମନେ ମନେ ବିରକ୍ତ ହେଲେ । ସେ ସାଇକିକୁ କହିଲେ, ''ପ୍ରଥମ କାମଟି ହେଲା । ଏବେ ଦ୍ୱିତୀୟ କାମଟି କର । ଏଠାରେ ପାଖ ପଡ଼ିଆରେ ମେଣ୍ଢାମାନେ ଅଛନ୍ତି । ସେମାନଙ୍କର ଲୋମ ଦେଖିବାକୁ ସୁନାପରି ଓ ଅତି ସୂକ୍ଷ୍ମ । ତୁ ଯାଇ ସେମାନଙ୍କ ଲୋମ ସଂଗ୍ରହ କରି ଆଣିବୁ ।''

ସାଇକି ପଡ଼ିଆକୁ ଯାଇ ମେଣ୍ଢାମାନଙ୍କୁ ଦେଖିଲା; କିନ୍ତୁ ସେମାନଙ୍କ ଦେହରୁ କିପରି ଲୋମ ସଂଗ୍ରହ କରିବ, କିଛି ଠିକ୍ କରିପାରିଲାନାହିଁ । ମେଣ୍ଢାଗୁଡ଼ାକ ଅତି ହିଂସ୍ର ଜଣାଯାଉଥିଲେ । ପାଖକୁ ଗଲା ମାତ୍ରେ ସାଇକିକୁ ମୁଣ୍ଡିଆ ମାରିପକାଉଥିଲେ । ସାଇକି କିପରି ଏମାନଙ୍କୁ ଧରିବ ଓ ଏମାନଙ୍କ ଦେହରୁ ଲୋମ କାଟି ଆଫ୍ରୋଡାଇଟ୍‌ଙ୍କୁ ଦେବ ? ସେ ହତାଶ ହୋଇ କାନ୍ଦିବାକୁ ଲାଗିଲା ।

ଏହି ସମୟରେ ନଦୀ ଦେବତା ତା ପାଖକୁ ଆସି ତାର ଦୁଃଖର କାରଣ ପଚାରିଲେ । ସାଇକି ସମସ୍ତ ଘଟଣା ଜଣାଇବାରୁ ନଦୀ ଦେବତା କହିଲେ, ''ତୁ ଏ ମେଣ୍ଢାମାନଙ୍କ ପଛରେ ଗୋଡ଼ାଇ କିଛି ଲାଭନାହିଁ । ତୁ କେବେହେଲେ ଗୋଟାଏ ସୁଦ୍ଧା ମେଣ୍ଢା ଧରିପାରିବୁନାହିଁ– ତା ଦେହରୁ ଲୋମ କାଟିବା ତ ଦୂରର କଥା । ତୁ କିପରି ମେଣ୍ଢା ଲୋମ ସଂଗ୍ରହ କରିପାରିବୁ ତାର ଉପାୟ ମୁଁ କହିଦେଉଛି । ନଈ କୂଳରେ ଗୁଡ଼ିଏ କଣ୍ଟାଗଛର ବୁଦା ଅଛି । ଏ ମେଣ୍ଢାମାନେ ନଈକୁ ପାଣି ପିଇବାକୁ ଯିବା ଆସିବା କଲାବେଳେ ସେମାନଙ୍କ ଦେହର ଅନେକ ଲୋମ ସେହି ବୁଦାମାନଙ୍କରେ ଲାଗି ରହିଥାଏ । ତୁ ସେହି ବୁଦାମାନଙ୍କରୁ ଲୋମ ସଂଗ୍ରହ କରି ଆଣିବୁ ।

ସାଇକି ତାହା କଲା । ବୁଦାମାନଙ୍କରେ ଲାଗିଥିବା ମେଣ୍ଢାଲୋମକୁ ସଂଗ୍ରହ କରି ସାଇକି ତାହା ନେଇ ଆଫ୍ରୋଡାଇଟ୍‌ଙ୍କୁ ଦେଲା ।

ଆଫ୍ରୋଡାଇଟ୍ ଦେଖିଲେ ସାଇକି ଦୁଇଟିଯାକ କାମ କରିଦେଲା । ତେଣୁ ସେ ସ୍ଥିରକଲେ, ଏଥରକ ଏପରି ଗୋଟିଏ କାମ କରିବାକୁ ଦେବି ଯାହାକି ସେ କେବେହେଲେ କରିପାରିବନାହିଁ । ସେ ସାଇକିକୁ କହିଲେ, ''ମୋର ସଙ୍ଗିନୀ ପର୍ସିଫୋନି ପାତାଳପୁରୀରେ ରାଜା ପ୍ଳୁଟୋଙ୍କ ପାଖରେ ଅଛି । ତାପାଇଁ ମୁଁ କିଛି ଜିନିଷ ରଖିଛି । ତାହା ନେଇ ତୁ ପର୍ସିଫୋନିକୁ ଦେଇଆସିବୁ ।'' ଏହା କହି ଆଫ୍ରୋଡାଇଟ୍ ଗୋଟିଏ ବାକ୍‌ସ ଆଣି ସାଇକିର ହାତକୁ ବଢ଼ାଇଦେଲେ ।

ଏଥରକ ସାଇକି ଏକବାରେ ହତାଶ ହୋଇପଡ଼ିଲା । ପାତାଳପୁରୀକୁ ଲୋକେ କେବଳ ମୃତ୍ୟୁ ପରେ ଯାଆନ୍ତି– ସେ କିପରି ଯାଇପାରିବ ? ପୁଣି ବାଟରେ ଷ୍ଟିକ୍‌ସ ନଦୀ ପାର ହେବାକୁ ପଡ଼ିବ । ଚାରନ ତାକୁ ନଦୀ ପାର କରାଇ ଦେବ କାହିଁକି ? ପୁଣି ପ୍ଳୁଟୋଙ୍କ ନଅର ଦୁଆରେ ସର୍ବିରେସ କୁକୁର ଥିବ । ସେ କେଉଁ ତାକୁ ଭିତରକୁ ଛାଡ଼ି ଦେବନାହିଁ ।

ସେ ଏକାନ୍ତ ନିରାଶ ହୋଇଥିବାବେଳେ ଆକାଶରୁ କାହାର କଥା ଶୁଣିବାକୁ ପାଇଲା–''ସାଇକି, ହତାଶ ହେବାର କାରଣନାହିଁ । କିପରି ଷ୍ଟିକ୍‌ସ ନଦୀ ପାର ହେବ, କିପରି ସର୍ବିରେସଠାରୁ ଉଦ୍ଧାର ପାଇବ ସେସବୁ ମୁଁ ବତାଇଦେବି ।''

ପ୍ରକୃତରେ କେହି ଜଣେ ଶୂନ୍ୟରୁ ତାକୁ ଉପାୟ ଶିଖାଇଦେଲା ଓ ସେହି ଅନୁସାରେ କାର୍ଯ୍ୟ କରି ସାଇକି ପାତାଳପୁରକୁ ଯାଇ ପର୍ସିଫୋନିକୁ ବାକ୍‌ସଟି ଦେଇ ଫେରିଆସିଲା ।

ସାଇକି ତିନୋଟିଯାକ କାର୍ଯ୍ୟ କରିଥିବାରୁ ଆଫ୍ରୋଡାଇଟ୍ ନିଜ କଥା ରଖି ଏରସଙ୍କ ସହିତ ସାଇକିର ବିବାହପାଇଁ ସ୍ୱୀକୃତି ଦେଲେ ।

ସାଇକି ଓ ଏରସ ବିବାହ ହୋଇ ସୁଖରେ ରହିଲେ । କିନ୍ତୁ ଏରସଙ୍କ ମନରେ ଗୋଟିଏ ଚିନ୍ତା ଥାଏ– ସାଇକି ଦେବତା ନୁହେଁ ମଣିଷ । ତେଣୁ ସେ ଦିନେ ମରିଯିବ । ସେତେବେଳେ ତାହାଙ୍କ ମନରେ ଭୟଙ୍କର ଦୁଃଖ ହେବ । ଦେବରାଜ ଜିଅସ ଏରସଙ୍କର ମନ କଥା ଜାଣିପାରି ସାଇକିକୁ ଅମର ବର ଦେଲେ । ତେଣିକି ସେ ଦୁହିଁଙ୍କର ଦୁଃଖର କିଛି ମାତ୍ର କାରଣ ରହିଲାନାହିଁ ।

—

# ଓରିଅନ୍ ଓ ଆର୍ଟିମିସ୍

ଗ୍ରୀସ୍‌ଦେଶରେ ଓରିଅନ୍ ବୋଲି ଜଣେ ଯୁବକ ଥିଲା । ବଣ ଜଙ୍ଗଲରେ ବୁଲି ଶିକାର କରିବାରେ ତାର ଆନନ୍ଦ । ଶିକାର ବେଳେ ତାର ପୋଷା କୁକୁରଟି ତା ସଙ୍ଗେ ସଙ୍ଗେ ରହିଥାଏ । ଏହି କୁକୁରଟିର ନାମ ସିରିଅସ । ଦିନେ ଓରିଅନ୍ ଶିକାରପାଇଁ ବଣରେ ବୁଲୁ ବୁଲୁ ଦେଖିଲା, ସାତଟି ଅତି ସୁନ୍ଦରୀ ବାଳିକା ଖେଳକୌତୁକରେ ମାତିଛନ୍ତି । ଓରିଅନ୍ ଏମାନଙ୍କୁ ଦେଖି ଆଖି ପିଛାଳି ପାରିଲାନାହିଁ । ସେ ଭାବିଲା, 'ଏ ସୁନ୍ଦରୀ ବାଳିକାଗୁଡ଼ିକ କିଏ ? ନିର୍ଜନ ବଣ ଭିତରେ କାହିଁକି ରହିଚନ୍ତି ? ଏମାନେ ହୁଏତ ଏଠାରୁ ଚାଲିଯିବେ ! ଏମାନଙ୍କ ରହିବା ଜାଗାଟା ଜାଣିପାରିଲେ ସେଠାରେ କେତେବେଳେ ହେଲେ ଏମାନଙ୍କୁ ଦେଖିପାରିବି ।' ଏହିପରି ଚିନ୍ତା କରି ସେ ସେମାନଙ୍କ ପଛେ ପଛେ ଯିବାକୁ ଲାଗିଲା ।

ଏହି ସାତଟି ବାଳିକା ଥିଲେ ସାତଟି କିନ୍ନରକନ୍ୟା । ଜଣେ ମନୁଷ୍ୟ ସେମାନଙ୍କ ପଛେ ପଛେ ଆସୁଥିବାର ଦେଖି ସେମାନେ ଭୟରେ ଦୌଡ଼ିବାକୁ ଲାଗିଲେ । ସହଜେ ସେମାନଙ୍କର ଦେହ ସୁକୁମାର– ଦୌଡ଼ିବାରୁ ସେମାନେ ଅଳ୍ପ ସମୟ ପରେ ହାଲିଆ ହୋଇ ବସିପଡ଼ିଲେ । ଏଣେ ଓରିଅନ୍ ସେମାନଙ୍କର ନିକଟବର୍ତ୍ତୀ ହୋଇଆସୁଥାଏ । ତେଣୁ ଓରିଅନ୍‌ଠାରୁ ନିଜକୁ ରକ୍ଷାକରିବାପାଇଁ ଅନ୍ୟ ଉପାୟ ନଦେଖି ସେମାନେ ଚନ୍ଦ୍ରର ଦେବୀ ଆର୍ଟିମିସ୍‌ଙ୍କୁ ପ୍ରାର୍ଥନା କଲେ, "ହେ ମାଆ ଆର୍ଟିମିସ୍, ଗୋଟାଏ ମନୁଷ୍ୟ ଆମ ଉପରେ ଅତ୍ୟାଚାର କରିବ ବୋଲି ଆସୁଛି । ତୁମେ ଆମମାନଙ୍କୁ ସେ ଦୁଷ୍ଟ ଲୋକ ହାତରୁ ରକ୍ଷାକର ।"

କିନ୍ନରକନ୍ୟାମାନଙ୍କ ଦୁଃଖ ଦେଖି ଆର୍ଟିମିସ୍‌ଙ୍କ ମନରେ ସେମାନଙ୍କ ପ୍ରତି ଦୟା ଆସିଲା । ସେ ଚାହୁଁ ଚାହୁଁ ସେମାନଙ୍କୁ ସାତଟି ଧଳା ବର୍ଣ୍ଣର ପକ୍ଷୀରେ ପରିଣତ କରିଦେଲେ । ସେମାନେ ଭୟରେ ଉପରକୁ ଉଡ଼ି ଉଡ଼ି ଯାଇ ଶେଷରେ ଆକାଶରେ ପହଞ୍ଚିଲେ । ସେଠାରେ ପହଞ୍ଚିବା ପରେ ସେମାନେ ସାତୋଟି ତାରାରେ ପରିଣତ ହୋଇଗଲେ । ସେମାନେ ପାଖାପାଖି ହୋଇ ଆକାଶରେ ଥିବା ଏବେ ମଧ୍ୟ ଦେଖିପାରିବ । ଗ୍ରୀସ୍‌ମାନେ ସେହି ତାରାପୁଞ୍ଜକୁ କହନ୍ତି ପ୍ଲେଇଡସ୍ । ଆମେ କହୁଁ ସପ୍ତର୍ଷି ତାରାପୁଞ୍ଜ ।

ଆର୍ଟିମିସ୍ କେବଳ ଚନ୍ଦ୍ରର ଦେବୀ ନଥିଲେ; ସେ ମଧ୍ୟ ଶିକାରର ଦେବୀ ଥିଲେ । ଓରିଅନ୍ ଶିକାର ଉଦ୍ଦେଶ୍ୟରେ ବଣରେ ବୁଲୁବୁଲୁ କିନ୍ନରକନ୍ୟାମାନଙ୍କୁ ଦେଖିଥିଲା ।

ଆର୍ଟିମିସ୍ ଦେଖିଲେ ଯୁବକଟି ରୂପବନ୍ତ ଓ ଶିକାରପ୍ରିୟ । ଦୌଡ଼ିବାରେ ମଧ ସେ ଖୁବ୍ ପାରଙ୍ଗମ । ତେଣୁ ସେ ଏହି ଯୁବକକୁ ଭଲପାଇଲେ ଓ ପ୍ରତିଦିନ ବଣକୁ ଆସି ତାହା ସହିତ ଶିକାର କରିବାରେ ଲାଗିଲେ । କ୍ରମେ କିଛି ଦିନ ପରେ ଦୁହିଁଙ୍କ ଭିତରେ ପ୍ରଗାଢ଼ ବନ୍ଧୁତା ସ୍ଥାପିତ ହେଲା । କିନ୍ତୁ ସେ ଦୁହିଁଙ୍କର ଏକ କାରଣରୁ ବିବାହ ହୋଇପାରିଲାନାହିଁ ।

ଚନ୍ଦ୍ରଦେବୀ ଆର୍ଟିମିସ୍ ହେଉଛନ୍ତି ସୂର୍ଯ୍ୟଦେବତା ଆପୋଲୋଙ୍କର ଭଉଣୀ । ସେ କେବେହେଁ ବିବାହ କରିବେନାହିଁ ବୋଲି ବଡ଼ ଭାଇଙ୍କ ଆଗରେ ପ୍ରତିଜ୍ଞା କରିଥିଲେ । କିନ୍ତୁ ଆପୋଲୋ ଦେଖିଲେ, ଆର୍ଟିମିସ୍ ଏଇ ଓରିଅନ୍ ସଙ୍ଗେ ଯେପରି ମିଳାମିଶା କରି ବନ୍ଧୁତା କଲାଣି ସେଥିରେ ଦିନେ ନା ଦିନେ ସେ ନିଜର ପ୍ରତିଜ୍ଞା ଭୁଲିଯାଇ ତାକୁ ବିବାହ କରିବା ଅସମ୍ଭବ ନୁହେଁ । ଓରିଅନ୍‌ର ଯେତେ ଗୁଣ ଥିଲେ ସୁଦ୍ଧା ସେ ସାମାନ୍ୟ ମନୁଷ୍ୟ ଛଡ଼ା ଆଉ କିଛି ନୁହେଁ । ନିଜର ପ୍ରତିଜ୍ଞା ଭଙ୍ଗ କରି ଜଣେ ସାଧାରଣ ମନୁଷ୍ୟକୁ ବିବାହ କରିବା ଆର୍ଟିମିସ୍‌ଙ୍କ ପକ୍ଷରେ ଘୋର ଲଜ୍ଜାର ବିଷୟ ହେବ । ତେଣୁ କିପରି ଓରିଅନ୍‌କୁ ଅନ୍ତର କରିବେ ତାହାହିଁ ଆପୋଲୋଙ୍କର ଚିନ୍ତାର ବିଷୟ ହେଲା । ଶେଷରେ ସେ ଗୋଟିଏ ନିତାନ୍ତ ହୀନ ଉପାୟର ଆଶ୍ରୟ ନେଲେ ।

ଦିନେ ଆପୋଲୋ ଓ ଆର୍ଟିମିସ୍ ନିଜ ନିଜର ଧନୁଶର ଧରି ସମୁଦ୍ର କୂଳରେ ବୁଲୁଥିଲେ । ଗପ କରୁ କରୁ ଆପୋଲୋ ଶିକାର ବିଷୟରେ କଥାବାର୍ତ୍ତା ପକାଇଲେ । କଥା ପ୍ରସଙ୍ଗରେ ଆପୋଲୋ କହିଲେ, ''ମୋର ଏ ଧନୁ ତୁମର ଧନୁଠାରୁ ସରସ । ମୁଁ ତୁମଠାରୁ ବେଶୀ ଦୂରକୁ ଶର ମାରିପାରିବି । ପୁଣି ମୋ ଧନୁରେ ଲକ୍ଷ୍ୟ ସ୍ଥିର କରିବା ସହଜ ।'' ଆର୍ଟିମିସ୍ ହେଉଛନ୍ତି ଶିକାରର ଦେବୀ । ଭଲ ଶିକାର ଜାଣନ୍ତି ବୋଲି ତାଙ୍କର ଅଭିମାନ ଥାଏ । ତେଣୁ ସେ ଆପୋଲୋଙ୍କ ଉକ୍ତିର ପ୍ରତିବାଦ କରି କହିଲେ, ''ଭାଇ, ତୁମ କଥା ଠିକ୍ ନୁହେଁ । ମୋର ଧନୁ ଭଳି ଆଉ କାହାରି ଧନୁ ନାହିଁ । ସେଥିରେ ମୁଁ ଯେତେ ଦୂରକୁ ଶର ମାରିପାରିବି, ଆଉ କେହି ସେତେ ଦୂରକୁ ମାରିପାରିବେନାହିଁ ।''

ଆପୋଲୋ ଆର୍ଟିମିସ୍‌ଙ୍କୁ ଉତ୍ତେଜିତ କରିବାପାଇଁ କହିଲେ, ''ତୁମର ଏ ବୃଥା ଅଭିମାନ ! ତୁମର ଧନୁ ଭଲ ଓ ତୁମେ ଭଲ ଲକ୍ଷ୍ୟଭେଦ କରିବାର ପ୍ରମାଣ ଦେଇପାରିବ ?''

ଆର୍ଟିମିସ୍ କହିଲେ, ''ନିଶ୍ଚୟ, ଯେକୌଣସି ମୁହୂର୍ତ୍ତରେ ପ୍ରମାଣ ଦେବାପାଇଁ ମୁଁ ପ୍ରସ୍ତୁତ ।'' ତହୁଁ ଆପୋଲୋ ସମୁଦ୍ର ଆଡ଼କୁ ହାତ ଦେଖାଇ କହିଲେ, ''ଦେଖ, ଦୂରରେ ଗୋଟାଏ କଅଣ କଳାରଙ୍ଗର ଛୋଟ ପଦାର୍ଥ ଦେଖାଯାଉଛି । ଏକାଥରକେ ତାକୁ ଶର ମାରିପାରିଲେ ମୁଁ ସ୍ୱୀକାର କରିବି ଯେ ତୁମେ ମୋଠାରୁ ଭଲ ଲକ୍ଷ୍ୟ ଭେଦ କରିପାର ।''

ଏହା ଶୁଣିଲାକ୍ଷଣି ଆର୍ଟିମିସ୍ ସଙ୍ଗେ ସଙ୍ଗେ ନିଜ ଧନୁରେ ଗୋଟିଏ ଶର ବସାଇ ସେହି କଳା ପଦାର୍ଥ ଉପରକୁ ନିକ୍ଷେପ କଲେ । ଶରଟି ଠିକ୍ ଲକ୍ଷ୍ୟଭେଦକଲା ଓ କଳାବର୍ଣ୍ଣର ପଦାର୍ଥଟି ପାଣି ଭିତରେ ବୁଡ଼ିଗଲା । ଆପୋଲୋ ହସି ହସି କହିଲେ, ''ସାବାସ୍ ଆର୍ଟିମିସ୍ ! ମୋର ଗୋଟାଏ ଭୁଲ ଧାରଣା ଥିଲା । ମୁଁ ସ୍ୱୀକାର କରୁଛି, ଲକ୍ଷ୍ୟଭେଦ କରିବାରେ ମୁଁ ତୁମର ସମାନ ହୋଇପାରିବିନାହିଁ ।''

ଏହା କହି ଆପୋଲୋ ଚାଲିଗଲେ । କିନ୍ତୁ ଆର୍ଟିମିସ୍ ସେହିଠାରେ ରହି ଭାବିଲେ, ''ମୁଁ ଯେଉଁ ପଦାର୍ଥକୁ ଶର ମାରିଲି ତାହା ଭାସି ଭାସି କୂଳ ଆଡ଼କୁ ଆସୁଛି । ଦେଖାଯାଉ, ସେ ଜିନିଷଟା କଅଣ ?''

କିଛି ସମୟ ପରେ ସେହି ପଦାର୍ଥଟି ନିକଟବର୍ତ୍ତୀ ହେବାରୁ ଆର୍ଟିମିସ୍ ଯାହା ଦେଖିଲେ ସେଥିରେ ତାଙ୍କର ଘୋର ଅନୁତାପ ଆସିଲା– ଏହା ହେଉଛି, ଓରିଅନ୍‌ଙ୍କର ମୃତ ଦେହ । ଆର୍ଟିମିସ୍‌ଙ୍କ ଶରଟି ତାଙ୍କର ବକ୍ଷଦେଶକୁ ଭେଦ କରି ରହିଥିଲା । ତାଙ୍କ ପଛେ ପଛେ ତାଙ୍କ କୁକୁର ସିରିଅସ୍ ପହଁରି ପହଁରି କୂଳରେ ଲାଗିଲା । ଆର୍ଟିମିସ୍ ଅନେକ ବେଳଯାଏ ବିଳାପ କଲେ । ନିଜେ ଓରିଅନ୍‌କୁ ବଧ କରିଥିବାରୁ ତାଙ୍କର ଦୁଃଖ ଆହୁରି ଅଧିକ ହେଲା ।

ଆପୋଲୋ ଦେଖିଥିଲେ, ଓରିଅନ୍ ଓ ସିରିଅସ୍ ସମୁଦ୍ରରେ ପହଁରିବାକୁ ଯାଇଥିଲେ । ଓରିଅନ୍ ଓ ଆର୍ଟିମିସ୍‌ଙ୍କର ବିବାହ କରାଇ ନଦେବା ତାଙ୍କର ଇଚ୍ଛା ଥିଲା । ତେଣୁ ସେ କୌଶଳରେ ଆର୍ଟିମିସ୍‌ଙ୍କ ହାତରେ ଓରିଅନ୍‌କୁ ହତ୍ୟା କରାଇଲେ ।

ଆର୍ଟିମିସ୍ ଓରିଅନ୍ ଓ ସିରିଅସ୍‌କୁ ଗୋଟିଏ ଗୋଟିଏ ତାରାରେ ପରିଣତ କରି ଆକାଶରେ ରଖିଦେଲେ । ଏବେ ମଧ ସେ ତାରା ଦିଓଟି ଆକାଶରେ ରହିଅଛନ୍ତି । ଆମ ଦେଶର ଲୋକେ ସିରିଅସ୍‌କୁ କହନ୍ତି କୃତ୍ତିକା ନକ୍ଷତ୍ର ଓ ଓରିଅନ୍‌କୁ କହନ୍ତି ମୃଗଶିରା ନକ୍ଷତ୍ର ।

—

# ପାଣ୍ଡୋରାର ବାକ୍ସ

ଗ୍ରୀକ୍‌ମାନଙ୍କ ପୁରାଣରେ ବର୍ଣ୍ଣିତ ଅଛି ଯେ, ପୃଥିବୀରେ ପ୍ରଥମେ ମନୁଷ୍ୟ ସୃଷ୍ଟି ବେଳେ କେବଳ ପୁରୁଷ ଥିଲେ– ସ୍ତ୍ରୀ ଜାତି ସୃଷ୍ଟି ହୋଇନଥିଲା । ପୁଣି ଏହି ମନୁଷ୍ୟମାନଙ୍କ ମଧ୍ୟରେ ଗୋଟିଏ ଅସୁର ଜାତିର ଲୋକ ଥିଲେ । ଅସୁରମାନେ ସାଧାରଣ ମନୁଷ୍ୟଠାରୁ ଆକାରରେ ଖୁବ୍ ବଡ଼ ଥିଲେ ଓ ସେମାନଙ୍କର ପ୍ରଚୁର ବଳ ଥିଲା । ସେମାନଙ୍କୁ ଟାଇଟାନ୍ କୁହାଯାଉଥିଲା । ଟାଇଟାନ୍‌ମାନେ ଅଧିକ ଶକ୍ତିଶାଳୀ ଥିବାରୁ ସେମାନେ ସବୁବେଳେ ଦେବତାମାନଙ୍କ ସଙ୍ଗେ ବାଦ-ବିବାଦ କରୁଥିଲେ । ଦେବତା ଓ ଟାଇଟାନ୍‌ମାନଙ୍କ ମଧ୍ୟରେ ଅନେକ ସମୟରେ ଯୁଦ୍ଧ ହେଉଥିଲା ।

ସେ ସମୟରେ ପୃଥିବୀରେ ଅଗ୍ନି ନଥିଲା । ଟାଇଟାନ୍‌ମାନଙ୍କ ଭିତରୁ ପ୍ରୋମିଥିଅସ୍ ବୋଲି ଜଣେ ଅସୁର କୌଶଳରେ ସ୍ୱର୍ଗକୁ ଯାଇ ଦେବତାମାନଙ୍କଠାରୁ ଅଗ୍ନି ଚୋରାଇ ଆଣି ପୃଥିବୀର ଲୋକଙ୍କୁ ଦେଲା । ଲୋକେ ସହଜରେ ଅଗ୍ନିର ବ୍ୟବହାର କଲେ । ଦେବତାମାନଙ୍କର ରାଜା ଜିଅସ ଏହା ଜାଣିପାରି ଖୁବ୍ ରାଗିଗଲେ । ମନୁଷ୍ୟମାନଙ୍କୁ ଜବତ କରିବାପାଇଁ ସେ ଏକ ଉପାୟ କଲେ । ଅଗ୍ନିର ଦେବତା ହେଉଛନ୍ତି ହେଫାଷ୍ଟସ୍ । ଜିଅସ ତାଙ୍କୁ କହିଲେ, ‘‘ତୁମେ ଗୋଟିଏ ସ୍ତ୍ରୀ ସୃଷ୍ଟି କର– ତାକୁ ପୃଥିବୀକୁ ପଠାଇଦେବା ।’’

ଜିଅସଙ୍କ ଆଦେଶରେ ହେଫାଷ୍ଟସ୍ ଗୋଟିଏ ସ୍ତ୍ରୀ ସୃଷ୍ଟି କଲେ । ତାର ନାମ ହେଲା ପାଣ୍ଡୋରା । ଜିଅସ ପାଣ୍ଡୋରାକୁ ଗୋଟିଏ ବାକ୍ସ ଦେଇ କହିଲେ, ‘‘ତୁ ଏହି ବାକ୍ସଟି ନେଇ ପୃଥିବୀକୁ ଯାଆ । ବାକ୍ସଟି ବନ୍ଦ ଅଛି । ତାର ଚାବି ମଧ୍ୟ ତୁ ସାଙ୍ଗରେ ନେଇଯିବୁ– ମାତ୍ର କେବେହେଲେ ଏହି ବାକ୍ସକୁ ଫିଟାଇବୁନାହିଁ । ତୁ ବିଭାହେଲେ ଚାବିଟିକୁ ତୋର ସ୍ୱାମୀକୁ ଦେବୁ । ନିଜେ ଏ ବାକ୍ସଟି ଖୋଲିଲେ ତୁ ଘୋର ବିପତ୍ତିରେ ପଡ଼ିବୁ ।’’

ପାଣ୍ଡୋରା ଚାବି ସହିତ ବାକ୍ସଟି ଘେନି ପୃଥିବୀକୁ ଆସିଲା । ପୃଥିବୀର ଏପିମେଥିଅସ୍ ବୋଲି ଜଣେ ପୁରୁଷକୁ ସେ ବିବାହ କଲା । ବିବାହ ପରେ ସେ ଜିଅସଙ୍କ ଆଦେଶରେ ବାକ୍ସ ଓ ତାର ଚାବିଟି ଏପିମେଥିଅସ୍‌କୁ ଦେଲା । ଏପିମେଥିଅସ୍ ବାକ୍ସଟିକୁ ଚାବି ସହିତ ଘରର ଗୋଟିଏ କୋଣରେ ରଖିଦେଲା ।

ଅନେକ ଦିନ ଗଲା । ପାଣ୍ଡୋରା ବାକ୍ସ କଥା ପ୍ରାୟ ଭୁଲିଗଲା । ସେ ଘର ସଂସାର କାମରେ ଲାଗିଥାଏ । ଏପିମେଥିଅସ୍ ସହିତ ତାର ଦିନଗୁଡ଼ିକ ଆନନ୍ଦରେ କଟିଯାଉଥିଲା । ବାକ୍ସ କଥା ଭାବିବାକୁ ତାର ବେଳ ନଥାଏ ।

ଆହୁରି କିଛି ଦିନ ଗଲା । ଏଣିକି ଏପିମେଥିଅସ୍ କାମ କରିବାକୁ ଦୂରକୁ ଯିବା ଦରକାର ପଡ଼ିଲା । ସବୁବେଳେ ସେ ଘରେ ରହିପାରିଲାନାହିଁ । ପାଣ୍ଡୋରାକୁ ଅନେକ ସମୟରେ ଘରେ ଏକୁଟିଆ ରହିବାକୁ ହେଲା । ଯେତେବେଳେ ତା ମନ ଖରାପ ହୁଏ, ସେ ନାନା କଥା ଭାବେ । ଦୈବାତ୍ ଦିନେ ତାର ଜିଅସଙ୍କ ବାକ୍ସ କଥା ମନେପଡ଼ିଗଲା । ସେ ଘର କୋଣକୁ ଯାଇ ବାକ୍ସପାଖେ ଛିଡ଼ାହୋଇ ତାକୁ ଚାହିଁଲା । ତାର ମନେହେଲା ବାକ୍ସ ଭିତରୁ କଅଣ ଗୋଟାଏ ଶବ୍ଦ ଶୁଭୁଛି । ସେ ବାକ୍ସ ଉପରେ କାନ ଦେଇ ଶୁଣିବାକୁ ଲାଗିଲା । ଭିତରୁ ଶବ୍ଦ ବାହାରିଲା, ''ଆମକୁ ବାକ୍ସ ଭିତରୁ ବାହାରକରିଦିଅ ।''

ଏହା ଶୁଣି ପାଣ୍ଡୋରାର ମନ ଅଥୟ ହେଲା । ସେ ଚାବି ଆଣି ବାକ୍ସଟିକୁ ଫିଟାଇଦେଲା । ଢାଙ୍କୁଣୀ ଟେକିଦେବାମାତ୍ରେ ଶହ ଶହ ସଂଖ୍ୟାରେ ବିରୁଡ଼ି ଭଳି ପତଙ୍ଗ ବାକ୍ସରୁ ବାହାରିପଡ଼ି ତା ଦେହକୁ ବିନ୍ଧି ପକାଇଲେ । ଯନ୍ତ୍ରଣାରେ ସେ ଛଟପଟ ହେବାକୁ ଲାଗିଲା । ଖାଲି ଯେ ସେ ଯନ୍ତ୍ରଣା ଭୋଗିଲା ତାହା ନୁହେଁ, ତା ମନଟା ମଧ୍ୟ ବଦଳିଗଲା । ସେ ତାର ସ୍ୱାମୀ ଏପିମେଥିଅସ୍‌କୁ ସନ୍ଦେହ କରିବାକୁ ଲାଗିଲା । ଅନ୍ୟମାନଙ୍କ ପ୍ରତି ତାର ହିଂସା ଜାତହେଲା । ପର ଜିନିଷ ଉପରେ ତାର ଲୋଭ ଆସିଲା । ପତଙ୍ଗମାନେ ବାହାରିବା ସଙ୍ଗେ ସଙ୍ଗେ ପାଣ୍ଡୋରା ଦେହକୁ ବିନ୍ଧିଦେଇ ଝରକାବାଟେ ପଦାକୁ ପଳାଇଗଲେ । ଆକାଶରେ ସେମାନେ ଉଡ଼ିବାରୁ ଟିକେ ଅନ୍ଧାରୁଆ ଦେଖାଗଲା । ପାଣ୍ଡୋରା କଅଣ କରିବ ସ୍ଥିର କରିପାରିଲାନାହିଁ । କୌଣସିମତେ ସେ ଢାଙ୍କୁଣୀଟା ବନ୍ଦ କରିଦେଲା । ବାକ୍ସଟା ଫିଟାଇଥିବାରୁ ସେ ଘୋର ଅନୁତାପ କଲା ।

କିଛି ସମୟ ପରେ ବାକ୍ସ ଭିତରୁ ସେ ପୁଣି ଶବ୍ଦ ଶୁଣିବାକୁ ପାଇଲା । ସେ ବାକ୍ସ ଉପରେ କାନ ରଖି ଶୁଣିଲା । ବାକ୍ସ ଭିତରୁ ଶୁଣାଗଲା– ''ମୋତେ ବାହାରକରିଦିଅ, ମୋତେ ବାହାର କରିଦିଅ ।''

ପାଣ୍ଡୋରା କହିଲା, ''ନା ନା, ଆଉ ବାକ୍ସ ଫିଟାଇବିନାହିଁ । ଥରେ ଫିଟାଇ ଯେଉଁ କଷ୍ଟ ଭୋଗିଲିଣି, ତାହା ଜୀବନରେ ଭୁଲିବିନାହିଁ । ପୁଣି ଫିଟାଇଲେ ଆଉ କି ବିପଦ ପଡ଼ିବ କିଏ ଜାଣେ ? ନା ଆଉ ବାକ୍ସ ଫିଟାଇବା ଦରକାରନାହିଁ ।''

କିନ୍ତୁ ବାକ୍ସ ଭିତରୁ ବାରମ୍ବାର ଶୁଣାଗଲା, ''ପାଣ୍ଡୋରା, ମୋତେ ବାହାର କରିଦିଅ । ଦେଖିବ, ମୁଁ ତୁମର କିଛି ଅନିଷ୍ଟ କରିବିନାହିଁ, ବରଂ ତୁମକୁ ମୁଁ ସାହାଯ୍ୟ କରିପାରିବି । ଦୟାକରି ମୋତେ ବାହାରକରିଦିଅ ।''

ଏହା ଶୁଣି ପାଣ୍ଡୋରାର ମନ ଟିକିଏ ନରମ ହୋଇଗଲା । ସେ ଭାବିଲା, 'ଏତେ ଦୁଷ୍ଟ ଜୀବଙ୍କୁ ତ ବାହାର କରିସାରିଛି– ଆଉ ଗୋଟାଏ କିଏ ରହିଯାଇଛି । ଏହାକୁ ଛାଡ଼ିଦେଲେ– ବେଶୀ କ୍ଷତି ହେବ ଅବା କଅଣ ? ହଜାର ହଜାର ଦୁଷ୍ଟ ଜୀବ ଥାଉ

ଥାଉ ଗୋଟାକୁ ବନ୍ଦ କରିବାରେ କି ବିଶେଷ ଲାଭ ହେବ ?' ଏହିପରି ବିଚାରି ସେ ପୁଣି ଢାଙ୍କୁଣୀଟି ଖୋଲିଦେଲା ।

ଏଥର ବାକ୍‌ସ ଭିତରୁ ଗୋଟିଏ ଛୋଟ ସୁନ୍ଦର ପରୀ ବାହାରିଆସିଲା । ତା ଯୋଗୁ ଅନ୍ଧାରୁଆ ଘରଟା ଆଲୁଅ ହୋଇଗଲା । ତାର ହସ ହସ ମୁହଁ ଦେଖି ପାଣ୍ଡୋରା ତା ଦେହର ଯନ୍ତ୍ରଣା ଭୁଲିଗଲା । ପରୀଟି କହିଲା, ''ପାଣ୍ଡୋରା, ତୁମେ ଜିଅସଙ୍କ ଆଦେଶ ଭୁଲିଯାଇ ବାକ୍‌ସ ଫିଟାଇ ଖୁବ୍ ଭୁଲ କରିଛ । ସଂସାରରେ ରୋଗ, ଶୋକ, ହିଂସା, ଦ୍ୱେଷ, ଲୋଭ, ଘୃଣା, ପରନିନ୍ଦା ପ୍ରଭୃତି ଯେତେ ମନ୍ଦ ଜିନିଷ ହୋଇପାରେ ସେ ସବୁକୁ ଜିଅସ ଏହି ବାକ୍‌ସରେ ବନ୍ଦ କରି ରଖିଥିଲେ । ତୁମେ ବାକ୍‌ସଟିକୁ ଖୋଲିବା ମାତ୍ରେ ସେମାନେ ପତଙ୍ଗ ରୂପରେ ଉଡ଼ିଯାଇ ପୃଥିବୀଯାକ ବ୍ୟାପିଗଲେଣି । ଜିଅସ ଜାଣିଶୁଣି ଏଗୁଡ଼ିକ ବାକ୍‌ସରେ ପୂରାଇ ଚାବିଟି ତୁମକୁ ଦେଇଥିଲେ । ତୁମେ ଯେ ଦିନେ-ନା-ଦିନେ ବାକ୍‌ସ ଖୋଲିବ, ଏହା ତାଙ୍କୁ ଜଣାଥିଲା । କାହିଁକି ସେ ଏପରି କରିଥିଲେ ସେକଥା ମଧ୍ୟ ମୁଁ ଜାଣେ । ପୃଥିବୀର ଜଣେ ଟାଇଟାନ୍ ସ୍ୱର୍ଗରୁ ଅଗ୍ନି ଚୋରାଇ ଆଣି ମନୁଷ୍ୟଙ୍କୁ ଦେଇଥିଲା । ଜିଅସ ପ୍ରତିହିଂସା ନେବାପାଇଁ ତୁମକୁ ସୃଷ୍ଟି କରାଇ ତୁମ ହାତରେ ଏ ମନ୍ଦ ଜିନିଷଗୁଡ଼ିକ ପୃଥିବୀକୁ ପଠାଇଦେଇଥିଲେ ।''

ଏହା ଶୁଣି ପାଣ୍ଡୋରା ଅତି ଦୁଃଖିତ ହୋଇ କହିଲା, ''ହାୟ, ମୁଁ କଅଣ କଲି ? କିପରି ଏ ଦୁଷ୍ଟ ଜୀବମାନଙ୍କୁ ଧରି ପୁଣି ବାକ୍‌ସରେ ବନ୍ଦକରିବି ?''

ପରୀଟି ଉତ୍ତରଦେଲା, ''ପାଣ୍ଡୋରା, ସେମାନଙ୍କୁ ଧରିଆଣି ପୁଣି ବାକ୍‌ସରେ ବନ୍ଦ କରି ରଖିବା ଅସମ୍ଭବ । ସେମାନେ ଏବେ ପୃଥିବୀଯାକ ବ୍ୟାପିଗଲେଣି । ବର୍ତ୍ତମାନ କଅଣ କରାଯାଇପାରେ ତାହା ଚିନ୍ତା କର । ଜିଅସ ଏମାନଙ୍କ ସଙ୍ଗେ ମୋତେ ମଧ୍ୟ ପୃଥିବୀକୁ ପଠାଇଛନ୍ତି । ମୋର ନାମ ହେଉଛି 'ଆଶା' । ମୋର କାମ ହେଉଛି, ପୃଥବୀର ଲୋକମାନେ ଦୁଃଖ ଶୋକରେ ଆକୁଳ ହେଉଥିବା ବେଳେ ସେମାନଙ୍କୁ ସାନ୍ତ୍ୱନା ଓ ଭବିଷ୍ୟତ ସୁଖର ଆଶା ଦେବା । ମୁଁ ଚିରକାଳ ପୃଥିବୀରେ ରହି ମଣିଷ ଜାତିକୁ ଏହିପରି ଆଶା ଦେଇ ସେମାନଙ୍କର ଦୁଃଖ କଷ୍ଟ ଲାଘବ କରୁଥିବି ।''

ସେହିଦିନଠାରୁ 'ଆଶା' ପୃଥିବୀରେ ରହିଛି । ଯେତେବେଳେ କୌଣସି ମଣିଷ ଦୁଃଖ କଷ୍ଟରେ ପଡ଼ିଥାଏ, ସେତେବେଳେ ଆଶା ତାହା ଦୂର କରିବାପାଇଁ ତା ପାଖକୁ ଦଉଡ଼ିଆସେ ।

—

## ବିଶ୍ୱସାହିତ୍ୟ ଗ୍ରନ୍ଥମାଳା

ଶିହରଣ ଓ ରୋମାଞ୍ଚ ଦେଇପାରୁଥିବା କାହାଣୀ ବହି କିଶୋରପାଠକମାନଙ୍କୁ ବିମୋହିତ କରେ । ଓଡ଼ିଆ ପିଲାଙ୍କୁ ସେଭଳି ବହି ଯୋଗାଇଦେଇଛି ବିଶ୍ୱସାହିତ୍ୟ ଗ୍ରନ୍ଥମାଳାର ଶତାଧିକ ବହି । ସେମାନେ ଏଇ ବହିଗୁଡ଼ିକ ପଢ଼ି ଆନନ୍ଦ ପାଇଛନ୍ତି, ବିଶ୍ୱସାହିତ୍ୟ ସହ ପରିଚିତ ହୋଇଛନ୍ତି ଓ ବହି ପଢ଼ିବା ଅଭ୍ୟାସ ଲାଭକରିଛନ୍ତି ।

ସବୁ ପୁସ୍ତକମେଳା ଓ ଲାଇବ୍ରେରୀରେ ଛାତ୍ର-ଛାତ୍ରୀମାନେ ଖୋଜିଛନ୍ତି ବିଶ୍ୱସାହିତ୍ୟ ଗ୍ରନ୍ଥମାଳାର ରୋମାଞ୍ଚକର ବହି । ବହୁ ବିଶ୍ୱ-ବିଖ୍ୟାତ ବହିର ସଂକ୍ଷିପ୍ତସାର ଏହା ଯୋଗାଇଦିଏ । ବହୁ ଶିକ୍ଷାବିତ୍ ଏ ବହିଗୁଡ଼ିକର ଉଚ୍ଚ ପ୍ରଶଂସା କରିଛନ୍ତି । ସେମାନଙ୍କ ଭିତରୁ ଦୁଇଜଣଙ୍କ ଅଭିମତ ହେଲା -

"Biswa Sahitya Series- deserves commendation by all lovers of Odia. By providing reading material to the adolescent child, the publishers have earned the gratitude of all parents." Dr. Deviprasanna Pattanaik

"ଏହି ବହିଗୁଡ଼ିକ କିଶୋରବୟସ୍କ ଛାତ୍ରଛାତ୍ରୀଙ୍କ ପକ୍ଷେ ଅତୀବ ଆକର୍ଷଣୀୟ ହୋଇପାରିଛି । ଏହା ସେମାନଙ୍କ କଳ୍ପନାକୁ ଉଦ୍ଦୀପ୍ତ କରିବା ସଂଗେ ସଂଗେ ସାହିତ୍ୟ ପ୍ରତି ଅନୁରାଗ ବଢ଼ାଇଛି ।" (ଡ଼. ଜାନକୀ ବଲ୍ଲଭ ମହାନ୍ତି)

ସବୁ ପାଠକ ଓ ଅଭିଭାବକଙ୍କର ଏହାହିଁ ଅଭିମତ । ଜଣାଇଲେ ବହିଗୁଡ଼ିକର ପୂରା ତାଲିକା ପଠାଇଦେବୁ ।



ପ୍ରକାଶକ ଓ ପ୍ରାପ୍ତିସ୍ଥାନ

**କିଶୋର ସାହିତ୍ୟ ମନ୍ଦିର**

୨୦୧, ଶ୍ରୀନିବାସ, ସୂତାହାଟ, କଟକ-୧

**ଗ୍ରନ୍ଥମନ୍ଦିର,** ବିନୋଦବିହାରୀ, କଟକ-୨

ଯୋଗାଯୋଗ : (୦୬୭୧) ୨୩୦୮୨୩୪